# କ୍ଷେତ୍ର



ଡାକ୍ତର କେଶବ ଚନ୍ଦ୍ର ସାହୁ

# କ୍ଷେତ୍ର

ଲେଖକ :

ଡାକ୍ତର କେଶବ ଚନ୍ଦ୍ର ସାହୁ



ଏସ୍ କ୍ଷ ପବ୍ଲିକେଶନ୍ସ

ବିନୋଦ ବିହାରୀ,

କଟକ-୭୫୩୦୦୨

# ଷେଣ୍ଠ

ଲେଖକ : ଡାକ୍ତର କେଶବ ଚନ୍ଦ୍ର ସାହୁ
ପ୍ରଫେସର ପଡ଼ା, କଟକ-୨

ପ୍ରକାଶକ : ଶ୍ରୀ ନଳିନୀ କାନ୍ତ ନନ୍ଦ
ଏସ୍‌ବି ପବ୍ଲିକେଶନ୍ସ
ବିନୋଦ ବିହାରୀ, କଟକ-୭୫୩୦୦୨

ମୁଦ୍ରଣ : ସୁବର୍ଣ୍ଣ ପ୍ରିଣ୍ଟର୍ସ, କଟକ-୭୫୩୦୧୨

ପ୍ରକାଶନ କାଳ : ୧୯୯୧

ମୂଲ୍ୟ : ଟ ୬.୦୦

# ଘୋଷଣା

ମନୁଷ୍ୟ ଯେତେବେଳେ ନିଜକୁ ନିସ୍ୱ, ନିଃସହାୟ୍ ଅନୁଭବ କରେ ସେତେବେଳେ ସେ ପୁରୁଣା ସର୍ବସ୍ୱକୁ ଖୋଜେ । ଆଶା ଜନ୍ମେ । ଭବିଷ୍ୟତ ପାଇଁ ସେ ବନ୍ଧ, ସେତୁ ବାନ୍ଧେ ।

ପାଷାଣ ଖୋଦିତ ଶିଳ୍ପ ଥିଲା ଉତ୍କୃଷ୍ଟ । ମନ୍ଦିର ଓ ଶିଳ୍ପ ସ୍ଥାପତ୍ୟ ହେଉଛି ଆଜି ସାକ୍ଷୀ । ଉଦୟଗିରି, ଧଉଳି ଗୁମ୍ଫା ଆଦିମ ମନୁଷ୍ୟର ବାସ ଉପଯୋଗୀ । ମନ୍ଦିର ପ୍ରତ୍ୟେକ ଗ୍ରାମରେ ସମସ୍ତଙ୍କଠାରୁ ଭଲ ସ୍ଥାନରେ । ଭଲ ମନ୍ଦିର ଦେବତାଙ୍କୁ ଦିଆ ଯାଉଥିଲା । ସେଥିପାଇଁ ଓଡ଼ିଶାରେ କୋଠା ଘର କମ ।

ଓଡ଼ିଶାରେ ଧର୍ମ ବିଷୟକ ଶିଳ୍ପ ଦେଖାଯାଏ । ମନ୍ଦିର ହେଉଛି ଜାତିର ଧର୍ମ, ବୁଦ୍ଧିର ମାପକାଠି । ଓଡ଼ିଆ ଶିଳ୍ପୀର ହାତକାମ ଉନ୍ନତ । ଅଳ୍ପ ମଜୁରୀ ଦାବି କୁଟୁମ୍ବ ପୋଷି ଦେଶର ଗୌରବ ପାଇଁ ଦେବତା କାମରେ ଲାଗୁଥିଲେ । ଏସବୁ ହେଲା ଅତୀତ । ମନ୍ଦିରର ବିଶାଳତା ଦେଖିଲେ ମଣିଷର ସବୁ ଗର୍ବ, ଅହଙ୍କାର ଉଭେଇଯାଏ । ସେ ସବୁ ଆଜି ଜରାଜୀର୍ଣ୍ଣ, ଭଙ୍ଗାରୁଜା ।

ମନ୍ଦିରନଗ୍ରୀ ଭୁବନେଶ୍ୱର । ଏଠାର ସୌନ୍ଦର୍ଯ୍ୟ ଶିଳ୍ପ-ସ୍ଥାପତ୍ୟ ଉଚ୍ଚ । ଦ୍ୱିତୀୟ ଶିଳ୍ପାଗାର ହେଉଛି ଜଗନ୍ନାଥ ମନ୍ଦିର । ସମସ୍ତଙ୍କଠାରୁ ଉତ୍କୃଷ୍ଟ ଶିଳ୍ପ ଭଣ୍ଡାର ହେଉଛି କୋଣାର୍କ ।

ଧୌଳି, ଖଣ୍ଡଗିରି ଓ ଉଦୟଗିରି ବୌଦ୍ଧ ଓ ଜୈନ ଧର୍ମର ପୀଠ ଥିଲା । ଅଷ୍ଟମ ଶତାବ୍ଦୀର ମଧ୍ୟ ଭାଗରେ ଭୁବନେଶ୍ୱରଠାରେ ପରଶୁରାମେଶ୍ୱର, ମୁକ୍ତେଶ୍ୱର ପ୍ରଭୃତି ମନ୍ଦିର ତିଆରି ହେଲା ।

ଭୁବନେଶ୍ୱରର ଲିଙ୍ଗରାଜ ମନ୍ଦିର କାରୁକାର୍ଯ୍ୟ ଖୁବ୍ ଉଚ୍ଚ । ଓଡ଼ିଶା, ବଙ୍ଗଳା ନବାଭ୍ ଓ ତା'ର ଲୋକ ଏହାକୁ ଭାଙ୍ଗି ପାରିଲେ ନାହିଁ । ଘୁଞ୍ଚିଦେଇ ପଳାଇଲେ । ଶିବଲିଙ୍ଗ ଉପରେ ଲହୁଣି, ଦୁଧ ଜଳ ଢଳାଯାଏ । ଚୂନ ଯାହାସ୍ଥ ଜଳୀୟ ସେ ପଥରରୁ ଆସି ମିଶେ । ଏକ ଭଲ ଜଳୀୟ ବାହାରେ । ଏହା ଅମୃତ ପରି । ଏହା ଭୋକ ବଢାଏ । ଏହି ପଦାର୍ଥ ସ୍ୱାସ୍ଥ୍ୟକର ।

ରାଜାରାଣୀ ମନ୍ଦିର ଅତୀତରେ ସ୍ୱାତନ୍ତ୍ର୍ୟ ଧର୍ମର ପ୍ରତିବିମ୍ବ । ସେ ଯୁଗର ବେଶ୍ୟା, ଦରବାର, ଧର୍ମଭାବ କଳା ସବୁ ଅପୂର୍ବ ।

ମୁକ୍ତେଶ୍ୱର ମନ୍ଦିର ମନ୍ଦିରମାନଙ୍କର ସାର । ଏହାର କଳା କୌଶଳ, ତୋରଣର କାରୁକାର୍ଯ୍ୟ ଅତି ଉଚ୍ଚ ଧରଣର । ଏ ମନ୍ଦିର, ମନ୍ଦିରମାନଙ୍କର ମଣି ।

ବ୍ରହ୍ମେଶ୍ୱର ମନ୍ଦିର, ମୋହିନୀ ମନ୍ଦିର, କେଦାର ମନ୍ଦିର, ଅନନ୍ତ ବାସୁଦେବ ମନ୍ଦିରର କଳା ସୂନ୍ଦରତା ଓ କାରୁକାର୍ଯ୍ୟ ଭରପୂର ।

ଶିବ ମନ୍ଦିରକୁ ଗଲେ ମନରେ ଆସେ ଧର୍ମଭାବ, ଆନନ୍ଦ ଓ ପ୍ରସନ୍ନତା ।

ତୁମେତ ସକଳ କର୍ତ୍ତା ତୁମେ ତ ସବୁର ପିତା
ସର୍ବ ଧରମର ତୁମେ ପ୍ରେରଣା ।
ତୁମ ଦେହେ ସର୍ପ ଖେଳେ 'ସମତା' ଡମ୍ବରୁ ବାଜେ
ପ୍ରେମ ଶିରରୁ ବହେ ଝରଣା ॥

ବିଶ୍ୱରେ ଭାରତ, ଭାରତରେ ଉତ୍କଳ ଭୂମି ହେଉଛି ଧର୍ମଭୂମି, ଦେବଭୂମି, ତୀର୍ଥଭୂମି । ଏହା ଜଗନ୍ନାଥ କାଳିଆ ପାଇଁ ନୁହେଁ, ଏହା ଦେବ ରାଜ୍ୟ । ଜଗନ୍ନାଥ ଉତ୍କଳ ବିଶ୍ୱର ଦେବତା, ବହୁ ଅତୀତରୁ । କାଠ ଗଣ୍ଡିରେ ସେ ତିଆରି, ମାଂସ ସର୍କାଣ୍ଡି ଗଣ୍ଡିରେ ସେ ନାହାନ୍ତି । ଶବର ରାଜା ବିଶ୍ୱାବସୁ, ଆର୍ଯ୍ୟରାଜା ଇନ୍ଦ୍ରଦ୍ୟୁମ୍ନ, ବୌଦ୍ଧ ଇନ୍ଦ୍ରଭୂତି, ଶୈବ

ଶଙ୍କରାଚାର୍ଯ୍ୟ ଭକ୍ତବୀର ଚୈତନ୍ୟ, ଏପରିକ ଖ୍ରୀଷ୍ଟିଆନ ପ୍ରଭୁ ଯିଶୁ, ଇସଲାମଧର୍ମୀ ସାଲବେଗ, କବୀର ଭିନ୍ନ ଭିନ୍ନ ସମ୍ପ୍ରଦାୟ ଲୋକ ଶ୍ରୀଜଗନ୍ନାଥଙ୍କ ପ୍ରେମ-ମୈତ୍ରୀ-ଶରଧା ମଧ୍ୟରେ ମିଶିଯାଇଛନ୍ତି । ସେ ସର୍ବ ମଙ୍ଗଳ । ବିଶ୍ୱ ମଣିଷର ବିଶ୍ୱ ଭାତୃତ୍ୱବ ବାଡ଼ନ୍ତି । ତାଙ୍କୁ ପୁରୁଷୋତ୍ତମ ବୋଲି କୁହାଯାଏ ।

କର୍ମ; ଜ୍ଞାନ ଓ ଭକ୍ତି ମଧ୍ୟରେ ଭକ୍ତିଯୋଗ ହିଁ ଶ୍ରେଷ୍ଠ । କର୍ମ, ଜ୍ଞାନ ଭକ୍ତିରେ ଲୟ ହୁଏ । ସେ ଭକ୍ତଧର୍ମର ପିତା, 'ଜଗତ'ର ମାନବଙ୍କ ଧାରଣା ଯେ ଅସଂଖ୍ୟ ସୂର୍ଯ୍ୟ, ଲକ୍ଷ ଲକ୍ଷ ଗ୍ରହ ବୁଲୁଥାଏ, ଏସବୁର ସେ କର୍ତ୍ତା, ନାଥ, ସେଥିପାଇଁ ଜଗନ୍ନାଥ ।

## ଶ୍ରୀକ୍ଷେତ୍ର :

ଶୀତୁଆ ଖଟରେ ବସି ବାବା ନିଜକୁ ନିଜେ ଗାଏ । କେବେ ଜହ୍ନ ଆଲୁଅରେ ନୀରବ ସନ୍ଧ୍ୟାରେ ତା'ର ଦୁଇ ପ୍ରଶାନ୍ତ ଆଖିରେ, ଅନ୍ଧାର ରାତିରେ, ଘାଟାଲୋକରେ କେବେ କେବେ ଗୁଣୁ ଗୁଣୁ ହେଉଥାଏ ।

ଇଚ୍ଛା ଯିବାପାଇଁ ଶ୍ରୀକ୍ଷେତ୍ର ଭୂଇଁକୁ
ସଂସାରର ତୀର୍ଥଭୂଇଁ
ମନେ ଦେଖେ କେତେ ମହୋଦଧି ଜଳ
ଦେଖେ ଜଗତର ସାଇଁ ।

ମନ ଆଗେଇଲା । ବାହାରିଲି ଦର୍ଶନ ପାଇଁ ଦେଖିବ କଳା କୌଶଳ, ଦେଖିବ ସ୍ୱାସ୍ଥ୍ୟ ବୋଧ ତା' ପୂର୍ବପୁରୁଷ ମାନଙ୍କର । ଗଳ-ବେଳେ କେତେକ ଛୋଟ ଛୋଟ ପିଲ କ୍ଲାସ୍‌ରୁମକୁ ଯାଉଥିଲେ, "ଶ୍ରୀମା" ଆଶ୍ରମ ସ୍କୁଲ । ସେମାନେ ବ୍ରହ୍ମଚର୍ଯ୍ୟ ପରି ମନେହେଉଥିଲେ । ଗୁରୁକୁଳ ଆଶ୍ରମର ଶୃଙ୍ଖଳା ପ୍ରଥମେ ବ୍ରହ୍ମଚର୍ଯ୍ୟ ପରେ ଗୃହସ୍ଥ ଜୀବନ, ଶେଷରେ ବାନପ୍ରସ୍ଥ ଯାହା ବିଜ୍ଞାନ ସମ୍ମତ, ଭଲ ସ୍ୱାସ୍ଥ୍ୟବୋଧର ପରିଚାଳକ ।

ଠିକ୍ ଆଗେଇ ଗଳିବେଳକୁ ଦେଖିବାକୁ ମିଳିଲା ଛୋଟ ଛୋଟ ଘର । ବେଶ୍ ଲିପାପୋଛା ହୋଇଛି । ଏହାହିଁ ବ ଘରଦ୍ୱାର ପରିଷ୍କାର

ହୁଏ, ବାୟୁରେ ଉଡ଼ିବୁଲୁଥିବା ନାନା ରକମର ଜୀବାଣୁ ଘରଦ୍ୱାର ଲିପିବା ଦ୍ୱାରା ଉପରକୁ ଉଠିପାରନ୍ତି ନାହିଁ । ଉପରେ ବସୁଥିବା ଜୀବାଣୁ ତଳକୁ ଖସି ଆସନ୍ତି । ଫଳରେ ଜୀବାଣୁ ଶ୍ୱାସ ଭିତରକୁ ଯାଇ ପାରେନା, ଫୁସ୍‌ଫୁସ୍ ଓ ଶ୍ୱାସ ନଳୀରେ ରୋଗ ହୁଏନା ।

ସେଦିନ ଥିଲା ଦଶମୀ ମା ମାନେ ମୁଣ୍ଡଧୋଇ କେଶ ଶୁଖାଉ ଥିଲେ । କେତେକ ଆନନ୍ଦରେ କେଶ ଗୁଡ଼ୁ ଥାଆନ୍ତି । ଚଣ୍ଡିବଇଜର କଥା ପଡ଼ି ଲାଗିଲା । ତାଙ୍କ କୁଟୀର ପଛରେ ବହିଯାଉଛି କଳକଳ ଶବ୍ଦରେ କ୍ଷୁଦ୍ର ଜଳଧାରା, ଝରଣାଟିଏ ପରି ଦିଶୁଛି । ଆଗରେ ସୁନ୍ଦର ବଗିଚା । ମଝିରେ ମଝିରେ ଦୁଇ ଗୁଟିଏ ଝାଉଁ ଗଛ । ଦୂରରୁ ସେମାନେ ଜଙ୍ଗଲ ପରି ମନେ ହେଉଛନ୍ତି । ସବୁ ପର୍ବ ପର୍ବାଣିରେ ଭୋଜନ କମ କରିବାର କଟକଣା ରହିଛି । ତେଣୁ ବେଶୀ ଭୋଜନ କଲେ ଯେଉଁ ନାନା ରକମର ପେଟରୋଗ, ହୃଦ୍‌ରୋଗ, ମଧୁମେହ ଇତ୍ୟାଦି ହୁଏ, ସେସବୁ ଦେଖାଯାଏ ନାହିଁ ।

ଯାଉ ଯାଉ ରାସ୍ତାରେ ଦେବାଦେବୀଙ୍କ ମନ୍ଦିର ଦେଖାଗଲା । ଶସ୍ୟ କ୍ଷେତ ମଧ୍ୟରେ ଏକ ଏକ ଶିବ ମନ୍ଦିର, ଭୁବନେଶ୍ୱର ପ୍ରସିଦ୍ଧ ପୁଷ୍କରିଣୀ କୂଳରେ ଗୌରୀ ମନ୍ଦିର । ଧଉଳି ପାହାଡ଼ ଉପରେ ଶିବ ମନ୍ଦିର । ଶାନ୍ତି ସ୍ତୂପ, ଖଣ୍ଡଗିରି ଉଦୟଗିରିର ପ୍ରାଚୀନ ଗୁମ୍ଫା ଓ ଜୈନ ମନ୍ଦିର । ଖଣ୍ଡ-ଗିରି, ଉଦୟଗିରି ମନେହୁଅନ୍ତି ---

ଜ୍ୟୋତ୍ସ୍ନାମୟୀ ରାତରେ ତୁମେ ଦୁହେଁ ହସ
କେତେ ସରଗରେ ଖେଳ
ସଭକ୍ତ କରଣ ମୁଣ୍ଡନୁଆଇଁଣ
ତୁମେ ପ୍ରଭୁସଙ୍ଗେ ମେଳ ।

ଉତ୍କଳର ସବୁ ମନ୍ଦିର ସ୍ୱାସ୍ଥ୍ୟ ଉପଯୋଗୀ ସ୍ଥାନରେ ଅବସ୍ଥିତ । ସେ ଶୋଭା ସୌନ୍ଦର୍ଯ୍ୟ ହୃଦୟ ଓ ମନରେ ଶାନ୍ତି ଆଣେ । ସଂସାରର ସମସ୍ତ ଶୋକ ତାପ ସକଳ ଭାବନା ଚିନ୍ତା ଓ ସେଥିରୁ ଯାତ ଅନ୍ୟାନ୍ୟ

ରୋଗ ରକ୍ତଚାପ, ହୃତପିଣ୍ଡ ରୋଗ, ଶ୍ୱାସ ରୋଗ, ପାକସ୍ଥଳୀ ବା ଇତ୍ୟାଦି ରୋଗରୁ ଅବ୍ୟାହତି ମିଳେ ।

ଧଉଳି, ଖଣ୍ଡଗିରି, ଉଦୟଗିରି ଚଢ଼ିବା ବୁଲିବା ସେଠାକାର ବାୟୁ ସୂର୍ଯ୍ୟକିରଣ ଚନ୍ଦ୍ରାଲୋକ ସ୍ୱାସ୍ଥ୍ୟକର, ଉପଭୋଗ୍ୟ ମଧ୍ୟ । ଏହା ମନରୁ ସମସ୍ତ ଶୋକ, ଦୁଃଖ, ଚିନ୍ତା ଦୂରକରେ । ଏଠାର ଅମ୍ଳଜାନ ପୂର୍ଣ୍ଣ ବାୟୁ ଫୁସଫୁସ ପାଇଁ ଉପକାର ।

ଶ୍ରୀକ୍ଷେତ୍ରର ସମୁଦ୍ର କୂଳରେ ପ୍ରଶସ୍ତ ବେଳାଭୂମିକୁ ଅନାଇଲୁ କେତେ ବଡ଼ ବଡ଼ ଲହରି ବେଳାଭୂମି ଉପରକୁ ଲେଉଟି ପଡ଼ୁଛି । ସମୁଦ୍ରରେ ଆମେ ସ୍ନାନ କଲୁ ଖାଇବାକୁ ଇଚ୍ଛା ହେଲା, ମନରେ ଆନନ୍ଦ



ଆସିଲା । ଦୂର ସମୁଦ୍ରକୁ ଅନେଇଲେ ଦୃଷ୍ଟିଶକ୍ତି ସତେଜ ହେଲା । ମନ୍ଦିରର ନିକଟ ହେଲରୁ ଗୋଟେ ଉଲ୍ଲାସ ହୃଦୟରେ ଆସିଲା ।

ଜଗନ୍ନାଥଙ୍କ ପତିତପାବନ ମୂର୍ତ୍ତି ଦର୍ଶନ କଲୁ । ସର୍ବସମସ୍ତ ଜଗନ୍ନାଥଙ୍କ ବଦଳରେ ଏହାଙ୍କୁ ଦର୍ଶନ କରିଥିଲେ ବହୁ ମହାପୁରୁଷ । କବୀର, ନାନକ, ଦର୍ଶନ କରିଥିଲେ, ଗାନ୍ଧି ସାଲବେଗ ବର୍ଣ୍ଣନକରି ସମାନ ଆନନ୍ଦ ଅନୁଭବ କରିଥିଲେ । ତାପରେ ଆମେ ବାଇଶି ପାହାଚ ଚଢ଼ିଲୁ । (ଏହା ହୃତପିଣ୍ଡ ପାଇଁ ବ୍ୟାୟାମ ଅଟେ) । ଏ ପତିତପାବନ ମୂର୍ତ୍ତି ପ୍ରତିଷ୍ଠିତ ହୋଇଥିଲେ ପ୍ରାୟ ପାଞ୍ଚଶହ ବର୍ଷ ପୂର୍ବେ ଯେତେବେଳେ ଶ୍ରୀରାମଚନ୍ଦ୍ର ଦେବ ରେଜସ୍ୱାଙ୍କୁ ବିବାହ କରି ମୁସଲମାନ ଧର୍ମ ଗ୍ରହଣ କରିଥିଲେ । ସେ ଏହା କରିଥିଲେ କେବଳ ଶ୍ରୀ ମନ୍ଦିରକୁ ମୁସଲମାନ ମାନଙ୍କ ଧ୍ୱଂସରୁ ରକ୍ଷାକରିବାକୁ । ତାପରେ ଆମେ ବାଇଶି ପାହଚ ଚଢ଼ିଲୁ, ତାହା ସ୍ୱାସ୍ଥ୍ୟ ପାଇଁ ବ୍ୟାୟାମ ଅଟେ ।

ମାଳତିର ଉପରେ ଇନ୍ଦ୍ରଦ୍ୟୁମ୍ନଙ୍କ ଦ୍ୱାରା ତୋଳା ଯାଇଥିବା ଶ୍ରୀକ୍ଷେତ୍ରର ଶ୍ରୀମନ୍ଦିରରେ ଏ ଅଭିନବ ବିଜ୍ଞାନ କଥା ଭାବିଲେ ମନ ଉଲ୍ଲସି ଉଠିବ । ପ୍ରଭୁଙ୍କ ଦର୍ଶନ କଲାବେଳେ ପାଚକ ପଣ୍ଡାଏ ଆମକୁ ଘଉଡ଼ାଇ ଦେଲେ । ତାର କାରଣ ହେଉଛି ଆମର ଯିବା ଶୃଙ୍ଖଳିତ ନଥିଲା । ସେମାନେ କାର୍ଯ୍ୟରତ, ସେମାନେ ମହାପ୍ରସାଦ ନେଇ ଗଲାବେଳେ ମୁହଁରେ ତଦର, ଗାମୁଛ ବ୍ୟବହାର ଅଭ୍ୟାସଗତ ଭାବରେ କରୁଥିଲେ । ଏହା ଦ୍ୱାରା ମୁହଁରୁ ଆସୁଥିବା, ନାକରୁ ଆସୁଥିବା କାଶ ଛିଙ୍କ ବେଳେ ଛୋଟ ଛୋଟ ଜଳକଣା ଏଥିରେ ଜୀବାଣୁ (ଷ୍ଟାଫିଲୋକକମ୍) ଖାଦ୍ୟ ପଦାର୍ଥକୁ ନଷ୍ଟ କରନ୍ତି । ମୁଖମ୍ ଲଗାଇଲେ ଏହା ହୁଏନାହିଁ । ଏହି ଜୀବାଣୁ ଝାଡ଼ା ବାନ୍ତି କରାଇଥାନ୍ତି । ଶ୍ରୀମନ୍ଦିରରେ ଶହ ଶହ ବର୍ଷ ଧରି ଏ ପ୍ରଥା ପ୍ରଚଳିତ । ଏ ବିଷୟ ପାଶ୍ଚାତ୍ୟ ବୈଜ୍ଞାନିକ ମାନେ ଶହେ ବର୍ଷ ହେବ ଜାଣିଲେ ।

ଟେଷେଇ କରିବା ପ୍ରଣାଳୀ ଆଜକାଲର ବାଷ୍ପିୟ ପାଚନ ଉପାୟ ସହ ପ୍ରାୟ ସମାନ । ରନ୍ଧା ଘର କାନ୍ଥରେ ଉଚ୍ଚରେ ଥିବା ଝରକା ମାଛିର ପ୍ରବେଶକୁ ବନ୍ଦ କରେ । ଫଳରେ ସେ ଘରେ ଥିବା ଖାଦ୍ୟ ପଦାର୍ଥ ନଷ୍ଟ ହୁଏନାହିଁ ।

. ମହାପ୍ରସାଦ ବଳଦାୟକ ଓ ଜୀବସାର ପରିପୂର୍ଣ୍ଣ । ଦର୍ଶକ ମାନଙ୍କୁ ଦିଆଯାଉଥିବା ତୁଳସୀ ପତ୍ର, ଉତ୍ତେଜକ ବାୟୁନାଶକ ଓ ଶର୍ଦ୍ଦିରୋଧକ ଓ କାଶ ପାଇଁ ଉପଯୋଗୀ ।

ମନ୍ଦିରରେ ବ୍ୟବହୃତ ହେଉଥିବା ଚନ୍ଦନ ଶାନ୍ତିଦାୟକ । ଏହା ଶ୍ୱାସ ଓ ମୂତ୍ର ନଳୀର ଜୀବାଣୁଙ୍କୁ ନଷ୍ଟ କରେ । ଘିଅବତୀ ଓ କର୍ପୂର ଜୀବାଣୁ ନଷ୍ଟକରି ବାୟୁ ଶୁଦ୍ଧକରେ ।

ତିନେ ତ୍ରିମୂର୍ତ୍ତୀ ସରଳ ଖାଦ୍ୟ ପ୍ରସାଦ ସରଳ ବସ୍ତ୍ର ପରିଧାନ ଆଦର୍ଶ ଜୀବନ ପ୍ରଚାର କଲେ । ଏହି ନୀତି ନିଷ୍ଠା ଆଦର୍ଶ ହେଉଛି ନିଜର ଅଭାବ ଓ ଆବଶ୍ୟକତାକୁ ନ୍ୟୂନତମ ସ୍ତରକୁ ଆଣିବା । ଶହ ଶହ ଧନୀ ଦରିଦ୍ରଙ୍କୁ ଖାଦ୍ୟସାର ଯୁକ୍ତ ପ୍ରସାଦ ଯୋଗାଇଥାଏ ।

ପ୍ରଭୁଙ୍କ ଦର୍ଶନ ଆଣେ ଭୟ, ରାଗ, ଅହଙ୍କାରର ଅବସାନ । ବିଷାଦ ଦୂର କରେ, ସେଥିରୁ ଯାତ ରୋଗ ରକ୍ତଚାପ, ପେଟ ଘା, ଧଇଁ, ବାଇଶି ଇତ୍ୟାଦି ପାଦୁର୍ଭାବ ।

ଶ୍ରୀମନ୍ଦିରରେ ଖଚିତ ଦଶଅବତାରର କଳ୍ପନା ପୂର୍ଣ୍ଣ ବିକାଶ ପାଇଁ । ଯେଉଁ ବୌଦ୍ଧାବତାର ଖଚିତ ତାହା ମୋକ୍ଷ ପାଇଁ । ଦାରୁରେ ବ୍ରହ୍ମ ଦର୍ଶନ ଦିବ୍ୟ ଦୃଷ୍ଟି ଦିବ୍ୟଶକ୍ତି ହେଉଛି ଅତି ମାନସ ଶାନ୍ତି । ଜୟଦେବଙ୍କ ଏହି ଦଶାବତାର ଲେଖା ବାରଶହ ଶତାବ୍ଦୀର । ଏହା ଜୀବର କ୍ରମ ବିକାଶ । ମତ୍ସ୍ୟ ଜୀବନର ପ୍ରଥମ ବିକାଶ । କୂର୍ମ, ବରାହ, ନରସିଂହ, ପରେ ଶ୍ରେଷ୍ଠମଣିଷ ଆଦିବାସୀ ବାମନ ଅବତାର । ପର୍ଶୁରାମ କ୍ଷତ୍ରିୟ ସ୍ୱଜନଙ୍କୁ ନିର୍ଦ୍ଧନ କରେ । ବଳରାମ କୃଷକରେ । ଶତ୍ରୁ ନାଶକର ଶ୍ରୀରାମ ସୃଷ୍ଟିରେ ଧର୍ମ ଓ ଆଧ୍ୟାତ୍ମିକତା ପ୍ରଚଳନ କଲେ । ଏହାପରେ ବୁଦ୍ଧିମାନ ମଣିଷ ଜ୍ଞାନୀ ମଣିଷ ବୁଦ୍ଧହେଲେ । ଏହାର ଶେଷଅସ୍ତ୍ର ଧୂମକେତୁ ପରି କଳ୍କିଅସ୍ତ୍ର ମାରଣାସ୍ତ୍ର ଆଣବିକ ଅସ୍ତ୍ର ଯାହା ଆଜ ଯୁଗରେ ବ୍ୟବହାର କରାଗଲା । ବୁଦ୍ଧ ହେଉଛନ୍ତି ବିଜ୍ଞାନାଲୋକ ।

ମନ୍ଦିର ପରିକ୍ରମା ସମୟରେ ଅଶ୍ଳୀଳ ମୂର୍ତ୍ତୀ ଦେଖି କେତେ ପ୍ରଶ୍ନବାଚୀ ଉଠିଲା । ଏଠା ଜନସଂଖ୍ୟା ବୃଦ୍ଧି ପାଇଁ ଉଦ୍ଦିଷ୍ଟ ।

ପାଦୁକ ଜଳରେ ଥାଏ ଜୀବାଣୁ ନିବାରକ ଶକ୍ତି, ଏହା ଫର୍ମି ଜାତିପ୍ରୁ ଦୋର୍ଥ ପେନ୍‌ସିଲିନ୍ ପରି କାର୍ଯ୍ୟକରେ ।

ପରିକ୍ରମା ସମୟରେ ଶିବ ମନ୍ଦିର ଦେଖିଲୁ ଶିବଲିଙ୍ଗ ଉପରେ ଲମ୍ବୁଣି ଘଣ୍ଟା ହୋଇଥିଲା । ଏଥିରେ ଜୀବସାର 'କ' 'ଘ' ଥାଏ । ଚୂନ ଜାତୀୟ ଜିନିଷ ମିଶି ହଜମ ପକ୍ଷରେ ସହଜ ହୁଏ ।

ଅକ୍ଷୟ ତୃତୀୟା ଠାରୁ, ସ୍ନାନ ପୂର୍ଣ୍ଣିମା ଠାରୁ ଆଷାଢ଼ ଶୁକ୍ଳ ଦ୍ୱିତୀୟା ଭିତରେ ରଥଯାତ୍ରା ଆରମ୍ଭ । ଗୁଣ୍ଡିଚା ଠାରୁ ବାହୁଡ଼ା ପର୍ଯ୍ୟନ୍ତ ଗ୍ରହଣ କରନ୍ତି ।

ଶ୍ରୀ ମନ୍ଦିରକୁ ଧ୍ୱଂସରୁ ରକ୍ଷା କରିବା ପାଇଁ । ରାଜା ରାମଚନ୍ଦ୍ର ଦେବ ମୁସଲମାନ ରେଖାଆକୁ ବିଭା ହେଲେ । ଏ ଉପାୟ ଛଡ଼ା ତାଙ୍କୁ ଅନ୍ୟ ଉପାୟ ନଥିଲା ।



ରାଜା ଜଗନ୍ନାଥଙ୍କୁ ଦର୍ଶନ କରିବାରୁ ବଞ୍ଚିତ ହେଲେ । ରାଜା ବଡ଼-ଦାଣ୍ଡରେ ଲୁଙ୍ଗି ପିନ୍ଧି ବୁଲୁଛନ୍ତି । ବିକଳ କଣ୍ଠରେ କ'ଣ ଗୁଣୁ ଗୁଣୁ ହୋଇ ଗାଉଛନ୍ତି, ରାଜା କାନ୍ଧେ କାଢ଼ ଅଛି ରାଜା । ବଡ଼ ଦାଣ୍ଡର ଧୂଳିରେ ଗଡ଼ୁଛନ୍ତି । ସ୍ୱପ୍ନରେ ବଡ଼ପଣ୍ଡାଙ୍କୁ ପ୍ରଭୁ ହୁକୁମ୍ ଦେଲେ । ମୋତେ ସିଂହ ଦ୍ୱାରରେ

ପତିତପାବନ ମୂର୍ତ୍ତିଂକର ରକ୍ଷା । ' ମୋର ଭକ୍ତ ରାଜା ରାମଚନ୍ଦ୍ର ଅଥସ୍ତୁ । ବଡ଼ ପଣ୍ଡା ପ୍ରଭୁଙ୍କର ହୁକୁମ୍ ଅନୁସାରେ ତାହାହିଁ କଲେ । ଦର୍ଶନ-ପରେ ରାଜା କୃତ୍ୟ•କୃତ୍ୟ । ଏହା ହେଲା ଜଗନ୍ନାଥଙ୍କର କରୁଣା ।

ମୁକ୍ତିମଣ୍ଡପ ସଭାର ସବୁ ପଣ୍ଡିତ ବର୍ଗରକୁ ନେଇ କହିଲେ ଯେ, ରାଜା ମୁସଲମାନ ହୋଇ ଯାଇଥିବାରୁ ଛେରା ପହରା କରିବେ ନାହିଁ । ବଡ଼ ପଣ୍ଡା ସେ କାର୍ଯ୍ୟ ତୁଲାଇବେ । ତହିଁଆର ଦିନ ଶ୍ରୀଗୁଣ୍ଡିଚା, ସକାଳେ ବଡ଼ପଣ୍ଡା ଦୁଇଖଣ୍ଡ ହୋଇ ବେକ କଟିଯାଇ ମରି ପଡ଼ିବାର ଦେଖାଗଲା । ସମସ୍ତେ ଉପସ୍ଥିତ ହେଲେ । କେହି କହିଲେ ଜଗନ୍ନାଥେ ନିଜେ ବଡ଼ପଣ୍ଡାଙ୍କୁ କାଟିଦେଲେ । କେହି କହିଲେ ରେଜଆ ବୁଦ୍ଧି କରି ତାଙ୍କ ବେକ କଟେଇଛି । ସେ ଯାହାହେଉ ନା କାହିଁକି ଭଗବାନ ଶ୍ରୀ ଜଗନ୍ନାଥ ଯେ ରାଜାଙ୍କୁ ଭଲ ପାଆନ୍ତି ଏହା ପ୍ରମାଣିତ ହେଲା । ରାଜା ବାହାରେ ସବୁକାମ ତୁଲାଇଲେ ।

ଆଉଦିନେ ବୃଷ୍ଟିବାତ୍ୟା, ଝଡ଼, ମେଘ ସବୁ ଗଛ ଉପୁଡ଼ି ପଡ଼ିଛି । ଅନ୍ୟ ଗଛମାନ ଥୁଣ୍ଟା । ଭଲ ଭଲ ଫୁଲସବୁ ଉଡ଼ି ଯାଇଛି । ଶ୍ରୀ ମନ୍ଦିର ଚୂଡ଼ାରୁ ନୀଳଚକ୍ର ଭାଙ୍ଗି ଭଙ୍ଗାଘରେ ମାଟି କୁଡ଼ ଉପରେ । ସକାଳେ ପୃଥିବୀ ଶାନ୍ତ ନିର୍ମଳ । ଆକାଶ ଶାନ୍ତ । ଏତିକିବେଳେ ଗାଧୋଇବାକୁ ଆସିଥିଲା ସ୍ତ୍ରୀ ଲୋକଟିଏ । ସେ ବହୁତ ସୁନ୍ଦରୀ । ମୋଗଲ ସୈନ୍ୟ ଘୋଡ଼ା ପିଠିରେ ଚଢ଼ି ଆସୁଥିଲା, ଜଗନ୍ନାଥ ସଡ଼କରେ । ଜଣେ ଦୁର୍ଦ୍ଦାନ୍ତ ଅଶ୍ୱାରୋହୀ ଘୋଡ଼ାର ଗତିକୁ ମନ୍ଥର କରି ହଠାତ୍ ଲଗାମ୍ କସି ଘୋଡ଼ା ଅଟକାଇ ଦେଲା । ସେ ସ୍ତ୍ରୀ ଲୋକକୁ ଧରି ଆଣି ଘୋଡ଼ା ଉପରେ ବସାଇଲା । ସେ ଶକ୍ତିଶାଳୀ, ତାର ଦୁଇଟା ଜ୍ୱଳନ୍ତ ଆଖି, ଘନ ଘନ ନିଶ୍ୱାସରେ ସେ ସ୍ତ୍ରୀ ଲୋକଟି ଭୟ ଅନୁଭବ କରୁଥାଏ । ସେ ଯେତେବେଳେ କଟକରେ ପହଞ୍ଚିଲା, ସେତେବେଳେ ମେଘୁଆ ଜହ୍ନ ଆଲୁଅର ସନ୍ଧ୍ୟା ସବୁଆଡ଼େ ନୀରବ । ସେହି ସ୍ତ୍ରୀ ଲୋକଟିର ନାମ ପଦ୍ମା । ପଦ୍ମା ଶୁଣିଲା ନାହିଁ ସନ୍ଧ୍ୟାର ଶଙ୍ଖ ଧ୍ୱନି । ମଝିରେ ମଝିରେ ସେ ଶୁଣୁଥିଲା, ଘୋଡ଼ାର ଟାପୁ ଶବ୍ଦ । ଯେଉଁଠାରେ ସେ ଘୁଡ଼ଣୀ ପଡ଼ିଥିଲା ସେ ଘୁର୍ଣ୍ଣ

ଏବେର ନାମ "ଲାଲ-ବାଗ"। ଏ ସ୍ଥାନଟି ତାର ନାମ ଅନୁସାରେ ନାମିତ । ପଦ୍ମାର ମନରେ ନାନା ଚିନ୍ତା । ଶେଷରେ ସେ ଦୁଷ୍ଟର ବାହୁ ବନ୍ଧନରେ ରହିଲା । ତାର ନୂଆନାମ ହେଲା ପଦ୍ମା ବଦଳରେ ପାଡମା ବିବି । ତା'ର ଏକ ସୁନ୍ଦର ପୁତ୍ର ସନ୍ତାନ ଜାତ ହେଲା । ତା'ର ନାମ ହେଲା ସାର୍ଲବେଗ ।



ରାତି ଗଭୀର, ପଦ୍ମମା ଶୁଣି ପାରିଲ ଟିପ୍ ଟାପ୍ କଥା । ତା' ପୁଅ ବିଷୟରେ କଥା । ସେ ୩ ବର୍ଷର । ତା' ଦେହରେ ଧଳା ଧଳା ଦାଗ ଦେଖା ଯାଉଥିଲା । ଅନ୍ୟମାନେ ନବାବଙ୍କୁ କହୁଥାନ୍ତି ମା' ପୁଅକୁ ବାହାର

କରଦେବା ପାଇଁ । ଶେଷରେ ତାହାଙ୍କି ହେଲା । ସେ କାଢ କାଢ ଅର୍ଦ୍ଧ-ଗର୍ଣ୍ଣୀରେ ବାହାରିଗଲା । ସ୍ଥାନେ ସ୍ଥାନେ ମେଘୁଆ ଜର । ମା' ପୁଅ ଦାଣ୍ଡର ଖିକାରୀ । ସାନ୍ତ୍ୱନା ନାହିଁ ଭରସା ନାହିଁ । ହେଲାର ଆଖିରେ ଥିଲେ କେବଳ ଜଗନ୍ନାଥ । ପିଲ ସାଲବେଗ ରାମ ରାମ କୃଷ୍ଣ କୃଷ୍ଣ କହି ଭିକ୍ଷା କଲା । ଯାହା ମିଳେ ଖାଆନ୍ତି । ଲୋକମାନଙ୍କର ପିଣ୍ଡାରେ ଆଶ୍ରୟ ନେଇନ୍ତି । ରୋଗ ବଢିଲ ସାଲବେଗର । ଗୁରିଆଡ଼େ ଛଡ଼ । ଖାଇବାକୁ ନ ପାଇଲାରୁ ପ୍ରତିକ୍ରିୟା ଆରମ୍ଭ ହେଲ । ପିଡ଼ା ଅଧିକ, ଜର, ଅଙ୍ଗଧାତୁ ବିକଳାଙ୍ଗ ଶିଶୁ । ଜଗନ୍ନାଥଙ୍କ ଫଟୋ ଉପରେ ସେ ଦୁଇଟୋପା ଲୁହ ଢାଳିଲା । ସବୁ ଦିନ ପାଇଁ ଆଖି ବୁଜିଲା ।

ପ୍ରକୃତି ନଦେଇଗଲା ଦଣ୍ଡକ ପାଇଁ । ଅବସାଦରେ ଅସହାୟ ସେ । ତା'ପାଇଁ ସ୍ଥାନ ନାହିଁ, ଆଶ୍ରୟ ନାହିଁ । କେବଳ ପାରେଶ୍ୱର ସାହିର କଦମ୍ବ ଗଛ ମୂଳରେ ସାଲବେଗ ଭଜନ କଲାଦିନ ରାତିରେ ଭଗବାନଙ୍କ ପ୍ରତି ତା'ର ଅଭିମାନ ଖୁବ୍ ବେଶୀ ହେଲ । ଦେଖିଲା ଭଗବାନ ତାକୁ ଡ଼ାକୁଛନ୍ତି । ସେ କଦମ୍ବଗଛକୁ ଆଉଜି ଡ଼ୂକାଇବାକୁ ଲଗିଲା । ମଝିରେ ମଝିରେ ପଦେ ପଦେ ଭଜନ ବୋଲୁଥାଏ । ଆଗେଇ ଗୁଲିଲ ସେ । ପ୍ରେମରେ ବିଭୋର ହୋଇଉଠିଲା । ଜଗନ୍ନାଥଙ୍କ ଆଡ଼କୁ ମୁହାଁଇଲା । ସେ ମାଳନିର୍ବାଣ । ତୀର୍ଥଯାତ୍ରୀ ଅନେକ । ଦୀର୍ଘ ପଥଶ୍ରମ, ଜରର କମ୍ପ, ଗୁଲି ଗୁଲି ସେ ଯିବ ଶ୍ରୀକ୍ଷେତ୍ରକୁ । ଦର୍ଶନ କରିବ ସେ ପତିତପାବନଙ୍କୁ । ବାଟରେ ବିଶ୍ରାମ ନେଇ ନେଇ, ଜଗନ୍ନାଥଙ୍କୁ ଡ଼ାକି ଡ଼ାକି ସେ ସମସ୍ତ ବେଦନା ଭୁଲିଗଲା । ଲଣ୍ଡା ବାବା ସାଲବେଗଙ୍କୁ କାନ୍ଧରେ ବସାଇ ଆଗେଇଲା । ପ୍ରଭୁ ସ୍ୱପ୍ନାଦେଶ କଲେ, ସେ ଦିନର ସମସ୍ତ କାର୍ଯ୍ୟ ସାଲବେଗଙ୍କ ପାଇଁ ଅପେକ୍ଷା କଲା ।

ଦୁର୍ଗମ ଅନ୍ଧକାରେ ପଥ । ସେ କ୍ଷୀଣ ଆଶା ଧରି ଏକାକୀ ବାଟ ଗୁଲିଲା । ପଥରେ ଆଶ୍ରୟ ନାହିଁ । ଆଗରେ ଅବଲମ୍ବ ନାହିଁ । ପଥ ଭୟଙ୍କର ଅନ୍ଧକାର । ଯାହା କ'ଣ ସେହିଠାରେ ନିଃଶେଷ ହେବ?

ଗଛ ସବୁ ତାଙ୍କୁ ଆଶ୍ରୟ ଦେଲେ । ଗଛ ଗୁଡ଼ାକ କ'ଣ ପୂର୍ବ-ଜନ୍ମରେ ମଣିଷ ଥିଲେ ? ପଶ୍ଚିମାଯାତ୍ରୀମାନେ 'ଶ୍ରୀଗୁଣ୍ଡିଚାର' ବାହୁଡ଼ା ପାଇଁ ଚାଲିଛନ୍ତି । ତାଙ୍କପରି ଜଣେ ଅଧେ-ଶ୍ରେଷ୍ଠ ବୈଷ୍ଣବଙ୍କୁ ଦେଖି ମନରେ ସାହସ ବାନ୍ଧିଲେ ।

ଉପରୁ ଓଳ ସାଲବେଗ ପୋଖରୀରୁ କିଛି ପାଣି ପିଇଲେ, ପୁଣି ଆଗେଇଲେ । ସାଙ୍ଗେ ରଥ ଆଗଉନାହିଁ । ସମସ୍ତ ଚେଷ୍ଟା ବିଫଳ ।

ସାଲବେଗ ପହଞ୍ଚିପାରୁ ନାହାନ୍ତି । ତାଙ୍କ ପ୍ରାଣ କାନ୍ଦୁଛି । ସେ ଭଜନରେ ବିଭୋର । ଅନେକ ଅନୁଭବ କରୁଛନ୍ତି ଯେପରି ଜଗନ୍ନାଥେ ତାହା ଅପେକ୍ଷାରେ ଅଛନ୍ତି । ଲେଖକ ଭକ୍ତ-କୀର୍ତ୍ତନ ଜଗନ୍ନାଥଙ୍କୁ ଦୋହଲାଇଦେଲା, ସେ ପହଞ୍ଚିଲେ । ତା'ପରେ ନନ୍ଦିଘୋଷ ଆଗେଇଲା ।

—o—

## ଅର୍କକ୍ଷେତ୍ର :



ଯେଉଁ ଲୋକ ସମସ୍ତ ତ୍ୟାଗ କରିଛି ବିଜ୍ଞାନର ଅଗ୍ରତ, ସନ୍ୟାସୀର ବସ୍ତ୍ର ପିନ୍ଧିଛି ବା ପ୍ରକୃତ ସନ୍ୟାସୀ । ସେ ମଣିଷର ପଶୁବୃତ୍ତି ଥରେ ଥରେ ଶ୍ରମୁଖ ଉଠେ । ସୁଯୋଗ ସୁବିଧା ପାଇଲେ ମଣିଷ ମନରେ କ୍ଷୁଧା ଥରେ ଥରେ ବାହାରି ପଡ଼େ ।

ଆଦିବାସୀର ସୁନ୍ଦର ଦେହ, ସଙ୍କୋଚହୀନ ଆଖି, ଅନାବୃତ ମାଂସାଳ ତନୁ, ଖିଲ ଖିଲ ହସ, ଅଶ୍ଳୀଳ ଜହନ, ଚୈତାଳି ପବନ, ଢୋଲ ମହୁରୀର ବାଦ୍ୟ, ସଙ୍ଗୀତ ଲହରୀରେ ଯୌବନ ଚଞ୍ଚଳ ହୋଇ ଉଠେ ।

ବଣର ଫୁଲ ଝିଅ ମନ ଢଳା ଢଳା, ଦେହର ବିଳାସ ନୂଆ ଯୌବନର ଆନନ୍ଦ । ଗାଁର ଭେଣ୍ଡିଆ ହସି ଉଠନ୍ତି ଝିଅ ମାନଙ୍କୁ ଲକ୍ଷ୍ୟକରି । ଏମାନେ ରାମ ଯୁଗରେ ସୀତାଙ୍କ ସହିତ ହସୁଥିଲେ ।

କୃଷ୍ଣ ଯୁଗର କଥା । ସୁନ୍ଦରିଆ ଗୁଲୁ ଗୁଲୁଆ ଚେହେରା । ଯମୁନା କୂଳରେ ଖେଳ, ନାଚ । ଆଦ୍ଭୁତ ସୁନ୍ଦର କରେ ଯେତେବେଳେ

ସେମାନେ ନୌକା ବାନ୍ଧି ନଅନ୍ତି ଯମୁନା ନଦୀ ଉପରେ । ସେତେବେଳେ ସମାଜ ଏହାକୁ ଘୃଣା କରି ନାହିଁ । ଗ୍ରହଣ କରିଛି ବିଶାଳତାରେ ।

ଏହାପରେ ଅନେକ ଘଟଣା ଘଟିଛି ଅଜାଣତରେ । ଲୋକେ ପ୍ରାୟାନ୍ତ ବହୁତ ଆନନ୍ଦ । ସେତେବେଳେ ମନରେ ଭୟ ନଥାଏ । କେତେ ଗୃହାଣୀ, କେତେ ବ୍ୟବହାର ମନରେ ଅଶାନ୍ତ । ସେତେବେଳେ ସେ ଭାବେନାହିଁ ପାପ ପୁଣ୍ୟ, ଭଦ୍ର ଅଭଦ୍ର, ଶିଷ୍ଟାଚାର, ଅଶିଷ୍ଟାଚାର ଓ ଆଇନ୍ ବେଆଇନ୍ । କେତେବେଳେ କେତେବେଳେ ତାର ବ୍ୟବହାର ମଣିଷକୁ ଅସମାଜିକ କରି ଦିଏ । କେତେବେଳେ ଭୋଗିଲା ଲୋକ କାନ୍ଦି ଉଠେ, କେତେବେଳେ ରୋଗ ଭୋଗୀ ଯୋକମାନ୍ଙ୍କ ପରି ମରେ । ଅଭାବ ଅନାଟନ ସମାଜରୁ ବାହାରିଯିବାର ଭୟ ତାକୁ ସଞ୍ଚିତ କରେ । ଭଲ ମଣିଷପରି ଚଳି ଚାଲେ ।

କେତେବେଳେ ମଣିଷ କପଟତାରେ କଳା ଧନରେ ଉଚ୍ଛୃଙ୍ଖଳ ହୋଇଉଠେ, ପରାକ୍ରମଶାଳୀ ହୋଇଉଠେ । ହୋଇଉଠେ ଦୁଷ୍ଟ, ହୋଇ-ଉଠେ ସ୍ୱେଚ୍ଛାଚାରୀ । ଯଦୁ ବଂଶରେ ଏପରି କେତେକ ଉଚ୍ଛୃଙ୍ଖଳ ଯୁବକ ମଧ୍ୟରେ ଥିଲେ ଶାମ୍ବ । ଶାମ୍ବ ଭଗବାନ ଶ୍ରୀକୃଷ୍ଣଙ୍କର ଔରଷରେ ପତ୍ନୀ ଜାମ୍ବବତୀଙ୍କ ଗର୍ଭଜାତ ପୁତ୍ର । ଦିନେ ଶାମ୍ବଙ୍କୁ 'ଗର୍ଭବତୀ ନାରୀ ଭଳି ବେଶ ପରି କରି ମହର୍ଷିମାନଙ୍କୁ ପଚାରିଲେ କ'ଣ ଜନ୍ମ କରିବ । ସେମାନେ ଏ ପରିହାସ କଥାରେ ଅଭିଶାପ ଦେଲେ । ଲୁହାର ମୁଶଳ ବାହାରି ତାଙ୍କର ବଂଶକୁ ଧ୍ୱଂସ କରିବ । ସେଥିରେ ଜରା ଶବର ଶର ତିଆରି କରି ଶେଷରେ ଭଗବାନ ଶ୍ରୀକୃଷ୍ଣଙ୍କର ଜୀବନ ଅବଶାନ କଲା ।

ସେହି ଶାମ୍ବ ଥିଲେ ଅତି ସୁନ୍ଦର । ତାଙ୍କର ଥିଲା ଶୋଭନୀୟ ରୂପ । ସେ ଅନେକ ସମୟରେ ଗୋପୀମାନଙ୍କ ସହିତ ଜଳକ୍ରୀଡ଼ା କରି ମନାଶ୍ରୁମି କରୁଥିଲେ । ମହର୍ଷି ନାରଦ ବାରବାର କୃଷ୍ଣଙ୍କ ନିକଟରେ ଏହି ବର୍ଣ୍ଣନା କରୁଥିଲେ । ଦିନେ ନାରଦ ଭଗବାନ କୃଷ୍ଣଙ୍କୁ ନେଇ

ସବୁ ଦେଖାଉଥିଲେ । ତାର ଉଛୃଙ୍ଖଳତା, ଦୁର୍ନୀତି, ଦୁଷ୍କାମି, ସ୍ୱେଚ୍ଛାଚାରିତା ପାଇଁ ବ୍ୟସ୍ତ ହୋଇ ଭଗବାନ ଶ୍ରୀକୃଷ୍ଣ ତାକୁ ଅଭିଶାପ ଦେଇଥିଲେ



ବୋଲି କଥିତ ଅଛି । ଏହା ଫଳରେ ଶାମ୍ବ କୁଷ୍ଠରୋଗ ଭୋଗିଲେ । ଏହାଦ୍ୱାରା ମନର ବଳ କମିଲା, ଦେହର ଶକ୍ତି କମିଲା । ସୌନ୍ଦର୍ଯ୍ୟ ମଧ୍ୟ କମିଲା । ଲୋଭନୀୟ ରୂପ ଉଭେଇ ଗଲା । ଦେହସାରା ଧଳା ଧଳା ଛିଟ ଦେଖାଗଲା । ସ୍ନାୟୁରେ ବାରମ୍ବାର ପ୍ରବଳ ହେଲା । ପାଦର ବୁଢ଼ା ଆଙ୍ଗୁଠିରେ ଘା ହେଲା । ମୁହଁ ଏକ ପାଖ, ଫୁଲି ଲାଲ ହୋଇ ଗଲା । ତା ଶରୀରରେ କଳାକାରର ଫିକା ତୁଳୀର ରଙ୍ଗ ପରି ଏକ ଅସ୍ପଷ୍ଟ ଫିକା ପାଣିଚିଆ ସଂସାର ତ୍ୟାଗିର ପ୍ରତିମୂର୍ତ୍ତି ।

ସେ ନିଜକୁ ମନେକଲା ଘୃଣିତ । ସମାଜ ତାକୁ ଘୃଣା ଚକ୍ଷୁରେ ଦେଖିଲା । ତାର ସେ ଉନ୍ମାଦନା ଉଷ୍ଣତା ସବୁ ଉଭେଇଗଲା ।

ସେ ସିନା ଜଳକେଳି କରୁଥିଲେ, ପାଣିରେ ପହଁରୁଥିଲେ ମାତ୍ର କେଉଁଠି ଜଳାଶୟର ପାଣିରେ ଗଣ୍ଡ ଅଛି; କେଉଁଠି ପାଣି ଭଉଁରୀ



ଖାଉଛି ସେ ଜାଣି ନ ଥିଲେ । ସେ ଭାଙ୍ଗି ପଡ଼ିଲେ । ଏ ବେଗର ଦୁଃଖ ତାର ଆଦିମ ବୁଭୁକ୍ଷାକୁ ଲିଭାଇ ଦେଲା । ସେ ଅଦିନ ବସନ୍ତର ପୁଲକ ଆଉ ନାହିଁ । ସବୁ ମଉଳିଗଲା ।

ପିତାଙ୍କୁ କ୍ଷମା ମାଗିଲେ ଶାମ୍ବ । ଭଗବାନ ଶ୍ରୀକୃଷ୍ଣଙ୍କ ହୃଦୟ ତରଳି-ଗଲା । ସେ ଗରୁଡ଼କୁ ଆଦେଶ ଦେଲେ । ଗରୁଡ଼ ଆମ ଦେଶର ଅର୍କ କ୍ଷେତ୍ରକୁ ନେଇ ଆସିଲା ଶାମ୍ବଙ୍କୁ । ଗରୁଡଥିଲା ଭଗବାନ ଶ୍ରୀକୃଷ୍ଣଙ୍କ ଉଡ଼ାଜାହାଜ ।

ମୌନ ଆକାଶରେ ପୃଷ୍ଠଭୂମିରେ ପ୍ରଭାତର ପକ୍ଷୀକୂଳର ମଧୁର କୂଜନରେ ଉତ୍କଳଭୂଇଁ ଚକିତ ହେଲା । ମହାନଦୀ କାଠଯୋଡ଼ିର ଜଳ-ରାଶୀ ଉପରେ ଉଷାର ରକ୍ତିମ ଛଟା ଉକୁଟି ଉଠିଲା । ଲଜ୍ଜାତାରା ସମେ ଫିକା ପଡ଼ି ନିଶ୍ଚିହ୍ନ ହୋଇଗଲେ । ଶାମ୍ବ ଆନନ୍ଦ ମନରେ ଏସବୁ ଦେଖୁଥିଲେ । ଶାମ୍ବଙ୍କର ଦୁଃଖ, ଆନନ୍ଦ ହସ ଲୁହ ଏକାକାର ହୋଇ ମିଳାଇ ଯାଉଥିଲା ।

ଗରୁଡ଼ ଆଗେଇଲା । ଅବତରଣ କରିବାକୁ ସେ ଆରମ୍ଭ କଲା । ମଳିନ ଜ୍ୟୋତ୍ସ୍ନାଲୋକ ଗଛ ମଧ୍ୟରେ ଆଲୋକର ଗୋଟାଏ ତୋରଣ ସୃଷ୍ଟି କରିଥିଲା ଶାମ୍ବ ପାଇଁ । ସେ ତୋରଣ ବାଟେ ଆଖିରେ ପଡ଼ୁଥିଲା ସମୁଦ୍ରକୂଳର ପନ୍ତାବାଲି, ତା ସେପଟେ ନଦୀଆଳି ସମୁଦ୍ର । ମେଘମାଳ ଆକାଶରେ ମେଘ ଖଣ୍ଡ ମଧ୍ୟରେ ଚନ୍ଦ୍ରର ମଳିନ, ସ୍ୱପ୍ନାଳୁର ଜ୍ୟୋତ୍ସ୍ନା । ତଳେ ସମୁଦ୍ର ଦର୍ଶନ ପାଇଁ ବଢ଼େଇ ଯାଇଥିଲା । ଏହି ରହସ୍ୟମୟ ସ୍ଥାନକୁ ଉପଭୋଗ କରୁ କରୁ ସେ ଦେଖିଲେ ଟିକେ ଦୂରରେ ମୁନିଋଷିଙ୍କ ଆଶ୍ରମ । ସେମାନେ ସର୍ବଶ୍ରେଷ୍ଠ । ସେମାନେ ଶାମ୍ବଙ୍କର ଅପେକ୍ଷାରେ ଥିଲେ ଏଇ ଅର୍କକ୍ଷେତ୍ରରେ ।

ଏ ଦେଶର କଅଁଳ ଖରା, ଶୀତଳ ମୃଦୁ ତେଲ ମାଲିସ, ସୁଷମ ଖାଦ୍ୟ ତାଙ୍କ ଘାଆକୁ ଶୁଖାଇଲା । ରୋଗର ଉପଶମ ହେଲା, ବେଦନା-ଯନ୍ତ୍ରଣା ଭିତରେ ସେ ପାଇଲେ ଶାନ୍ତି । ଏହି ଦେବରାଜ୍ୟରୁ ଏଇ ମାନବ ତୀର୍ଥ ଭୂମିର ବିଦାୟ ନେବାପାଇଁ ତାଙ୍କର ଇଚ୍ଛା ହେଲା । ସେ ଫେରିଗଲେ ଦ୍ୱାରକାକୁ ।

ତାଙ୍କର ବିଦାୟବନ୍ଦନକୁ ଏ ଦେଶର ମା'ମାନେ ଏବେ ବି ଖୁସିରେ ପାଳନ୍ତି । ଏହି ଦଶମୀ ଦିନ ସୂର୍ଯ୍ୟଦେବଙ୍କୁ ପିଠାପଣା ଭୋଗ ଦେଇ ଶାଇପଡ଼ଶାର ପିଲାଙ୍କୁ ଖୁଆନ୍ତି । ଏହି ପର୍ବର ନାମ ଶାମ୍ବଙ୍କ ନାମାନୁସାରେ ଶାମ୍ବଦଶମୀ ରଖାଯାଇଛି ।

ଶିଶୁକୃଷ୍ଣ, ଅନ୍ଧ ଆସେ ବାରବାର ନହୁଅରେ କେବେ କଣ୍ଡା
ଦାନ ଦେଇଦେଲେ ପ୍ରଭୁଦଆଇବେ ଯାଇଯିବ ତେଣେ ଭଣ୍ଡା ।

—ବ୍ରହ୍ମପୁରାଣ, ଶାମ୍ବ ପୁରାଣ, କପିଳ ସଂହିତା, ଚୈତନ୍ୟ ଚରିତ ସୂତ୍ରରେ ଏହାର ବିଭିନ୍ନ ନାମ ମିଳେ । ଶ୍ରୀକ୍ଷେତ୍ରରୁ ଅର୍କକ୍ଷେତ୍ର ଅଭିମୁଖେ ଯାତ୍ରାକଲୁ । ମନ୍ଦିର ନିର୍ମାଣ କଳା, ସୃଷ୍ଟିରେ ଅଦ୍ୱିତୀୟା । ରଥପରି ସୂର୍ଯ୍ୟଥାଏ । ମନ୍ଦିରର ବଜନ ସ୍ଥାନରେ ଜୀବନ୍ତ ମୂର୍ତ୍ତି, ମନେପଡ଼େ ବହୁ

ଅଜ୍ଞାତର କାହାଣୀ । ଭଗବାନ ଶ୍ରୀକୃଷ୍ଣଙ୍କ ପୁତ୍ର ଶାମ୍ବ କୁଷ୍ଠ ରୋଗ ଭୋଗ କରୁଥିଲେ । ସେ ଦ୍ୱାରକାରୁ ଗରୁଡ଼ ନାମକ ଆକାଶ ବିମାନରେ ଆସି କୋଣାର୍କରେ ସୂର୍ଯ୍ୟ ପୂଜା କରି କୁଷ୍ଠ ରୋଗରୁ ଆରୋଗ୍ୟ ଲାଭ କରିଥିଲେ । ସୂର୍ଯ୍ୟ କିରଣ ସାହାଯ୍ୟରେ ଜୀବସାର 'ଡି' ଚର୍ମରେ ପ୍ରସ୍ତୁତ ହେଲା, ଏହା ଅସ୍ଥି ବଢ଼ାଇବାରେ ଓ 'ଘା' ଶୁଖାଇବାରେ ସାହାଯ୍ୟ କଲା । ଶାମ୍ବ ଆରୋଗ୍ୟ ଲାଭ କଲାପରେ ଉତ୍କଳ ଭୂମିର ମା ମାନେ ଶାମ୍ବଦଶମୀ ପାଳନ କରନ୍ତି । ସୂର୍ଯ୍ୟ ପୂଜାକରି, ପୂଜିତ ପ୍ରସାଦ ଛୋଟ ଛୋଟ ପିଲାଙ୍କୁ ଖୁଆନ୍ତି ।

ଏହା ଅନ୍ଧବିଶ୍ୱାସ ନୁହେଁ ଏହା ବିଜ୍ଞାନ ଉପରେ ଆଧାରିତ, ଏସବୁ ଅନ୍ଧକାରରୁ ଆଲୋକକୁ, ଅମଙ୍ଗଳରୁ ମଙ୍ଗଳକୁ, ଭେଦରୁ ଅଭେଦକୁ, ମୃତ୍ୟୁରୁ ଅମୃତ୍ୟୁକୁ ନେବାର ପ୍ରୟାସ ମାତ୍ର ।



# ତୁଳସିକ୍ଷେତ୍ର

ଶହ ଶହ ବର୍ଷର ଇତିହାସ । ଏକ ପଲ୍ଲୀ ଅଞ୍ଚଳ । ସେ ସ୍ଥାନ ମହାନ । ସେ ଜୀବନ ପବିତ୍ର । ଦେଶରେ ବହୁତ ପରିବର୍ତ୍ତନ । ମାତ୍ର ସେ ଯାଗା, ସେ ସ୍ଥାନ, ସେ କ୍ଷେତ୍ର ରହିଛି ଗୌରବର ସହିତ । ବାତ୍ୟା ଆସିଲା, ବନ୍ୟା ଆସିଲା, ଧନ ଜୀବନ ନଷ୍ଟ । ମନେହେଲା ସବୁ ତ ଗଲା, କିନ୍ତୁ ତା'ର ମାଧୁରିମା ପୁଣି ଉଠିଲା । ତାର ସୁନାମ ପୁଣି ଫେରି ଆସିଲା । ଜ୍ଞାନ ବିତରଣ କରେ ; ଏହା ବର୍ତ୍ତମାନ ଏକ ତୀର୍ଥଭୂମି ।

ଖ୍ୟାତି ଏହାର କେନ୍ଦ୍ରାପଡ଼ା ଜନବହୁଳ ପଲ୍ଲୀ ଅଞ୍ଚଳ । ଏକ ଧର୍ମ କ୍ଷେତ୍ର ରୂପେ ପ୍ରସିଦ୍ଧ । ତୁଳସୀ କ୍ଷେତ୍ର ନାମରେ ଖ୍ୟାତ ।

ଶୁଣାଯାଏ ଯେ ସେଠାରେ ଗୋଟିଏ ଅସୁର ବାସ କରୁଥିଲା । ତା'ର ନାମ ଥିଲା କନ୍ଦରାସୁର । ସେ ବଡ଼ ଅତ୍ୟାଚାରୀ ଥିଲା । ତାର ଅତ୍ୟାଚାରରେ ସମସ୍ତେ ବ୍ୟସ୍ତ । ମଣିଷ ବୁଦ୍ଧିବଳ ପାଇଲା ନାହିଁ । ଦ୍ୱାପରରେ ମଧୁସୂଦନ ପରି ଭଗବାନ ବଳଦେବ ଆସିଲେ । ଅସୁରର ଅତ୍ୟାଚାରରୁ ଉଦ୍ଧାର କରି ତାକୁ ବଧକଲେ । ଶାନ୍ତି ଓ ସତ୍ତର ପୂଜା ହେଲା । କନ୍ଦରାସୁରର ଗୋଟେ ଝିଅ ଥିଲା । ସେ ଥିଲା ସତୀ ଓ ତପସ୍ୱୀ । ନାମ ତା'ର ତୁଳସୀ । ତାର ଗୁଣରେ ଖୁସି ହୋଇ ତାକୁ ବଳଦେବ ବିବାହ କଲେ । ତାଙ୍କରି ନାମାନୁସାରେ ସେ ଜାଗାର ନାମ ତୁଳସୀକ୍ଷେତ୍ର ହେଲା ।

ଅନ୍ୟ ରକମ ଦେଖିଲେ ମନେହୁଏ ତୁଳସୀ ଗଛ ବହୁପୋକାରୀ । ସୁଗନ୍ଧ, ଉତ୍ତେଜକ, ବାୟୁନାଶକ, ରକ୍ତଶୋଧକ, ଶର୍ଦ୍ଦିନାସକ । ସେହିପରି ଏଠାର ଲୋକେ ପରୋପକାରୀ, ଦୟାଳୁ, ଧାର୍ମିକ, ସତ୍ ଓ ଧାର୍ମିକ ଥିଲେ । ବୋଧହୁଏ ଏହି କାରଣରୁ ଏ ଯାଗାର ନାମ ତୁଳସୀକ୍ଷେତ୍ର ହେଲା ।

ଆଜି ଏକ ପ୍ରକାର ବିସ୍ତାର କଲେ ଯେ ଅନ୍ୟ ଏକ ପଲ୍ଲୀ ବା ପଡ଼ାର ସମଷ୍ଟିର ଏକ କେନ୍ଦ୍ର ସ୍ଥଳୀ । ତେଣୁ ଏହା କେନ୍ଦ୍ର ପଲ୍ଲୀରୁ କେନ୍ଦ୍ରାପଡ଼ା ହୋଇଥିଲା ପରି ମନେହୁଏ । ମନେହୁଏ ସାମାଜିକ ନ୍ୟାୟ ବିସ୍ତାରର କେନ୍ଦ୍ର ଥିବାରୁ ଏହାର ନାମ ଏହିପରି ।

ଶହ-ଶହ ବର୍ଷତଳେ ସେଠାରେ 'ମଧୁସାଗର ନଦୀ ଥିଲା । ଏ ନଦୀ ଆଜି ବିଲୁପ୍ତ । ଏହି ନଦୀକୂଳରେ ମରହଟ୍ଟା ମାନଙ୍କ ଦ୍ୱାରା ବଳ-ଦେବଜୀଉ ମନ୍ଦିର ପ୍ରତିଷ୍ଠା ହୋଇଛି । ଏ ମନ୍ଦିରରୁ ଯେବେ ସତ୍ୟ, କରୁଣା, ମୈତ୍ରୀ ପ୍ରଚାରିତ ହେଉଥିଲା, ଧର୍ମଭେଦ, ଜାତିଭେଦ ନଥିଲା । ସତ୍ୟ ବଳଭଦ୍ର ରୂପରେ ପୂଜା ପାଉଥିଲେ । ଯୀଶୁଙ୍କ ପ୍ରଚାରିତ ଈଶ୍ୱର ପ୍ରେମ ଶ୍ରୀଜଗନ୍ନାଥ ରୂପେ ପ୍ରଚାରିତ ହେଉଥିଲା । ବୁଦ୍ଧଙ୍କ ପ୍ରଚାରିତ କରୁଣା ଶୁଭଦ୍ରା ରୂପରେ ପୂଜିତା । ଏ ତ୍ରିମୂର୍ତ୍ତିଙ୍କ ସରଳ ଖାଦ୍ୟ, ସରଳ ବସ୍ତ୍ର ଦ୍ୱାରା ଆଦର୍ଶ ଜୀବନ ପ୍ରଚାରିତ ହେଉଥିଲା । ଦାରିଦ୍ର୍ୟକୁ ମନେରଖି ନିଜର ଅଭାବ ଓ ଆବଶ୍ୟକତାକୁ ଠିକ୍ ପରିମାଣରେ ଆଣିଲା ।

ଏହା ମାନବିକତା ଶିକ୍ଷା ଦେଉଛିରେ । ଏ ଗୋଟିଏ ବଡ଼ ରଥର ଥିଲା ସମସ୍ତ ଭକ୍ତ ଭାବକ । ଦୁଃଖୀ, ଦରିଦ୍ର, ଧନବାନ ସମସ୍ତେ ଏ ରଥ ଟାଣିବାରେ ଭାଗ ନିଅନ୍ତି । ସମ ମନୋଭାବ ଦ୍ୱାରା ସମସ୍ତେ ରଥ ଟାଣନ୍ତି । ଏ ବିରାଟ ରଥ ପରି ଯେକୌଣସି ବଡ଼କାମ ଆସିବ ତାକୁ ସମସ୍ତେ ମିଶି ସମାଧାନ କଲେ ହୋଇପାରିବ । ପ୍ରଭୁ ବଳଭଦ୍ର କନ୍ଦରାସୁର ରାକ୍ଷସକୁ ମାରିବାର ମାନେ ହେଉଛି ସତ୍ୟର ଆଚରଣ ଦ୍ୱାରା ସମସ୍ତ ଦୁଃଖ ଅନ୍ୟାୟ ଅତ୍ୟାଚାର ଦେଶରୁ ଲୀନ ହୋଇ ପାରିବ ।

ଏଥିପାଇଁ ଏଠାକାର ଓଳକଣା ମେଳଣ ଏହି ଉଦ୍ଦେଶ୍ୟରେ ପ୍ରତିଷ୍ଠା କରାଯାଇଛି । ଏହା ଗୋଟିଏ ମେଳଣ ଉତ୍ସବ । ରଙ୍ଗ ଅଭିର ଖେଳର ତାତ୍ପର୍ଯ୍ୟ ହେଉଛି ସୃଷ୍ଟିରେ ବାଦ, ଭେଦଭାବ ଈର୍ଷା ଦୂରକରି ସ୍ନେହ, ଶ୍ରଦ୍ଧା, ବନ୍ଧୁତାର ଆକର୍ଷଣ କରିବା । ସମାଜର କଲ୍ୟାଣ ସାଧନ

କର୍ଣ୍ଣବା । ଏହିପରି ଏହା ତୁଳସୀକ୍ଷେତ୍ର ରୂପେ ପୂତ ପବିତ୍ର ଶ୍ରୀବରେଖାର ପୀଠସ୍ଥଳୀ ଅଟେ ।

ଯେପରି ଏଠାକାର ଦେବାଦେବୀଙ୍କ ନିକଟରେ ପଶୁ ବଳିଦାନ କଥା ଚଳିଆସୁଛି । କୌଣସି ଦେବତା, ପରମ ପୁରୁଷ, ମହାପୁରୁଷୀ ଶକ୍ତି ଦେବୀ, ବିଶ୍ୱମାତା କେବେ ଏହା ଗ୍ରହଣିବେ କି ? ତାର ଅର୍ଥହେଲା ସେତେ ପାଶବିକ ଗୁଣ, ଅବିଶ୍ୱାସ, ହିଂସା ଈର୍ଷା, ଦ୍ୱେଷ, ଭୟ ବିବାଦ, ତାର ସହାର ଶେଷ । ଏହା ହେଲେ ଆସିବ ସ୍ଥାୟୀ ସୁଖ ଶାନ୍ତି । ବିଶ୍ୱ ମଙ୍ଗଳମୟ ହେବ ।

ସଭ୍ୟତାର ଉନ୍ନତି ଦ୍ୱାରା ସେହି ଶିକ୍ଷା ମନ୍ଦିରରୁ ଯାଇ ଶିକ୍ଷା କେନ୍ଦ୍ରରେ ପହଞ୍ଚିଛି ।

ସେହି ସ୍ନେହ, ଶ୍ରଦ୍ଧା, ପ୍ରେମ, ମୈତ୍ରୀରୁ ଫୁଟି ଉଠିଛି ଆଜି ଏକ ଅନୁଷ୍ଠାନ । ସୁଖ, ଶାନ୍ତି, ଜ୍ଞାନ ସେଠାରେ ବାପ୍ପାବାବାଙ୍କ ଅନ୍ୟ ଏକ ଆଶ୍ରମ । ବୃଦ୍ଧ ନର ନାରୀ ବହୁ ସଂଖ୍ୟାରେ ରହୁଛନ୍ତି । ସଂସାରରୁ ଦୂରରେ ରହି ସତ୍ ଜୀବନ କଟାଉ ଅଛନ୍ତି । ଭଗବତ୍ ଦର୍ଶନ ଅନୁଭବ କରୁଛନ୍ତି । ତୀର୍ଥଯାତ୍ରୀ ବହୁ ସଂଖ୍ୟାରେ ଆନନ୍ଦ ମନରେ ସେଠାକୁ ଯାଉଛନ୍ତି । ଆଉ ଅନ୍ୟପ୍ରକାର ଭାବିଲେ ନିରାଶ୍ରୟ ଶିଶୁ , ଅଧମ ଅନାଥ ପରିତ୍ୟକ୍ତ ପିଲାମାନଙ୍କର ଏହା ଆଶ୍ରୟ ସ୍ଥଳ । ଆଶ୍ରୟହୀନ ପାଏ ଆଶ୍ରୟ । ଅନାଥ ପାଏ କୃପା । ଏହା ସତ୍ୟ, ଦୟା, ଆନନ୍ଦର ଲୀଳା ଭୂମି । ରୂପ ନେବାକୁ ଯାଉଛି ବିଶ୍ୱ ପ୍ରେମ ଓ ବିଶ୍ୱଧର୍ମ ।

ଏଠାରେ ସାଧୁ ଓ ସିଦ୍ଧପୁରୁଷ ମାନଙ୍କର ଏକ ପୁଣ୍ୟଭୂମୀ । ଏଠାରେ ଜ୍ଞାନ, କର୍ମ, ଭକ୍ତି ରୂପ ନେଉଛି, ବିଶ୍ୱପ୍ରେମ ଧର୍ମରେ । ବହୁ ଦୂରରୁ ବହୁତ ଲୋକ ଆସନ୍ତି । ବାବାଙ୍କର ଆଶୀର୍ବାଦ ପାଇଁ । କର୍ମ, ଜ୍ଞାନ ଭକ୍ତିର ମିଳନରେ ଭଗବାନଙ୍କ ଆଡ଼କୁ ମୁହାଁଇଲେ ତାହା 'ପ୍ରେମ' ନାମ ଧରେ । ଏହି ଆଶ୍ରମରେ ନାନା ରକମର ଫଳଗଛ, ଫୁଲ ବଗିଚା ।

ଆସୁଥିବା ଭକ୍ତ ମାନଙ୍କ ପାଇଁ ଯୋଗାଏ ଆନନ୍ଦ । ଅନେକ ଟଙ୍କପଇସା ଉତ୍ସବ ପାଳିତ ହୁଏ । ସମସ୍ତଙ୍କ ପାଇଁ ପ୍ରସାଦ ସେବାର ବନ୍ଦୋବସ୍ତ ଅଛି । ସେମାନଙ୍କର କର୍ମରେ କୌଣସି ସ୍ୱାର୍ଥ ନଥାଏ । ସେମାନେ ସେଠାରେ ଅନାସକ୍ତ ଭାବରେ କାମ କରନ୍ତି । ସ୍ତ୍ରୀ ନାହିଁ, ପିଲା ପିଲି ନାହାନ୍ତି, ଘର ଦ୍ୱାର ନାହିଁ । ନିଜର ବୋଲି କିଛି ନାହିଁ । କିନ୍ତୁ କର୍ମ କରିବାରେ ଧୂରନ୍ଧର । ଭଗବାନଙ୍କର ନାମ କୀର୍ତ୍ତନ ଓ ଭଗବତ ସେବା ଏ ସମସ୍ତଙ୍କୁ କର୍ମ ଜ୍ଞାନ ଭକ୍ତିରେ ତ୍ରିବେଣୀ ପରି ସ୍ନେହ ସେମାନଙ୍କର ହୃଦୟରେ ଭକ୍ତି ଲହରୀ ଖେଳେ । ସ୍ରଷ୍ଟାଙ୍କ ଚରଣତଳେ ମସ୍ତକ ଲୋଟାଇ ସେମାନେ ପ୍ରାର୍ଥନା କରନ୍ତି । ଜନଜୀବନରେ ମାନବିକତା, ଶାନ୍ତି ଓ ସମତା ଦେଖାଯାଏ ।

ଠ ଠ ଠ

## ଶୈବକ୍ଷେତ୍ର

ସତ୍ୟର ଜ୍ୟୋତି, ଜ୍ଞାନର ଜ୍ୟୋତି ଜଳିଉଠେ ଶିବଙ୍କ ତପସ୍ୟାରେ, ତାଙ୍କ ସାଧନାରେ । ଅନ୍ଧକାର ଦୂର ହୁଏ । ଥରେ ଏହିପରି ଆଲୋକ ଜଳି ଉଠିଥିଲା ହିମାଳୟ ଉପରେ, ମାନସ ସରୋବରରେ । ବିଷ୍ଣୁ ଏହା ଲକ୍ଷ କଲେ । ସେ ବ୍ରହ୍ମାଙ୍କୁ ପଚାରିଲେ "ଏ ଆଲୋକ କଣ" ? ବ୍ରହ୍ମା ଯାହା ଗୋଟିଏ ଉତ୍ତର ଦେଲେ । ବିଷ୍ଣୁଙ୍କର ହୃଦୟ ବୋଧ ହେଲା ନାହିଁ । ସେ ଅପେକ୍ଷା କଲେ । ତ୍ରିମୂର୍ତ୍ତିଙ୍କ ଭେଟ ହେଲା ଥରେ । ବିଷ୍ଣୁ



ପୁଣି ଥରେ ପଚାରିଲେ ଶିବଙ୍କୁ । ସେ କହିଲେ ଆପଣଙ୍କୁ କଣ ଅଜଣା ଅଛି" ? ସେ ବାଧ୍ୟକଲେ କହିବାକୁ । ଶିବ କହିଲେ 'ଶଙ୍କର ପାଇଁ ଯେତେବେଳେ ସାଧନା କରେ ସେତେବେଳେ ଜ୍ଞାନରେ ଜ୍ୟୋତି ଆତ୍ମାର ଜ୍ୟୋତି ଜଳିଉଠେ, ଆଲୋକିତ ହୁଏ ଏ ବିଶ୍ୱ' । ସମସ୍ତ ଗୋଚର ଥାଇ ମଧ୍ୟ ଏ ପ୍ରଶ୍ନ ପୁଣି ?

ଏତେ ମହାଶକ୍ତି ପାଇଁ ସେ ସର୍ବତ୍ର ପୂଜିତ । ବଣ, ଜଙ୍ଗଲ, ପାହାଡ଼, ପର୍ବତ, ବାଲିବାଡ଼, କ୍ଷେତ ସର୍ବତ୍ର ସ୍ଥାପିତ, ପୂଜିତ ।

ତଥାପି କ'ଣ ସର୍ବତ୍ର ଆଦୃତ, ତାଙ୍କୁ କ'ଣ ସମସ୍ତେ ସ୍ନେହ, ଭକ୍ତି, ଆଦର କରନ୍ତି ? ତାଙ୍କର ଶଶୁର 'ଦକ୍ଷ ନିଜକୁ ସର୍ବଶ୍ରେଷ୍ଠ ଭାବିବା ପାଇଁ ଯଜ୍ଞ କଲେ । ତାଙ୍କୁ ଛାଡ଼ି ସମସ୍ତଙ୍କୁ ନିମନ୍ତ୍ରଣ କଲେ । ତଥାପି ଦକ୍ଷଙ୍କ ଝିଅ ସତୀ ଶିବଙ୍କ ସ୍ତ୍ରୀ, ଅନିମନ୍ତ୍ରିଣ ହୋଇ ମଧ୍ୟ ଯୋଗ ଦେଲେ । ନାରଦ ତାଙ୍କୁ ଯିବା ପାଇଁ ବହୁତ କହିଲେ । ମହାଦେବ କହିଲେ "ମୋତେ ଯିଏ ଘୃଣା କରନ୍ତି, ତୁମକୁ ମୋ ବିରୁଦ୍ଧରେ ଖରାପ କଥା କହିବେ ।" ଏହା ସତ୍ତ୍ୱେ ସେ ଗଲେ । ପିତାଙ୍କ କଟୁବାକ୍ୟ ତାଙ୍କୁ ବହୁତ କଷ୍ଟ ଦେଲା । ସେ ଦୁର୍ଗା ପରି ସୁନ୍ଦର ଦେଖାଗଲେ । ସେ ନିଜ ପିତାଙ୍କ ଗୋଡ଼ତଳେ ପଡ଼ି ପ୍ରାଣତ୍ୟାଗକଲେ ।

ତାଙ୍କ ନିଜ କେଶରୁ ବହୁତ ଯୋଦ୍ଧା, ରାକ୍ଷସ ବାହାରି ସମସ୍ତ ପଦାର୍ଥ ଧ୍ୱଂସ କଲେ । ରାଜାର ମୁଣ୍ଡକୁ କାଟି ତାଣ୍ଡବ ଲୀଳା କଲେ ।

ତାଙ୍କ ଶାଶୁ ଆସି ଶିବଙ୍କ ପାଦତଳେ ଲୋଟିଗଲେ । ପ୍ରାର୍ଥନା କଲେ । ଦକ୍ଷଙ୍କୁ ଜୀବନ ଦାନ ଦେଇ ସେ 'ସତୀ'କୁ ନେଇ ହିମାଳୟ ଗଲେ । ତାଙ୍କ ଆଖିରୁ ଅଗ୍ନି ବାହାରିଲା ।

'ସତୀ' ପୁଣି ଜନ୍ମହେଲେ । ଶିବଙ୍କ ସ୍ତ୍ରୀ ହୋଇ ପ୍ରେମର ଅମର ଗୀତ ଗାଇଲେ । ଏ ଅନ୍ୟାୟୀ, 'ଅଧର୍ମୀ, ଗର୍ବୀ, ଅହଙ୍କାରୀକୁ ଠିକ୍ ରାସ୍ତାକୁ ଆଣିବା ପାଇଁ ।

ସତୀଙ୍କ ପ୍ରତି ଯେତେ କରୁଣା, ଯେତେ ଦୟା, ଯେତେ ପ୍ରେମ ସେ ତାଙ୍କ ତପସ୍ୟା ପାଇଁ, ତାଙ୍କର ସାଧନା ପାଇଁ, ତାଙ୍କ ଭକ୍ତି ପାଇଁ ।

ହିମାଳୟ ଠିଆ ହୋଇଛି ଯୁଗ ଯୁଗ ଧରି । ତା' ଉପରେ ଦେବଦାରୁ-ସରଗ ଛୁଇଁବା ପରି ମନେହେଉଛି । ତପସ୍ୟାରତ ଥିଲେ ଉମା, ଶିବଙ୍କୁ ପାଇବା ପାଇଁ । ଶେଷରେ ସେ ତାଙ୍କୁ ପାଇଲେ, କୋଳକୁ ନେଲେ ।



ଏସବୁ ହେଲେ ବି କପଟ ଆଚରଣ ତାଙ୍କୁ ଅଥୟ କରୁଥିଲା । ସେ ନିଜର ସ୍ତ୍ରୀ ହେଉ ବା ଅନ୍ୟ କେହି ହୁଅନ୍ତୁ, ଏହାର ଶାନ୍ତ ସ୍ୱରୂପ ସେ ପୃଥକ କରୁଥିଲେ ।

ଦିନକର କଥା ଲିଙ୍ଗରାଜ ମହାଦେବ ଓ ପାର୍ବତୀ ଦିନେ ଏ ଭୂଖଣ୍ଡ ଛାଡ଼ ଅଗସ୍ତ୍ୟ ମୁନିଙ୍କ ଆଶ୍ରମକୁ ଯାଇଥିଲେ । ଏଥିରେ ଏ ଦେଶର

ଦଣ୍ଡକାରଣ୍ୟରେ । ଅଗସ୍ତ୍ୟ ଋଷି ମହାଦେବଙ୍କୁ ଖୁସିକରିବାପାଇଁ ରାମ-ଚରିତ କହିଲେ, ମହାଦେବ ବଡ଼ ଆନନ୍ଦିତ ହେଲେ । ଋଷି ମହାଦେବଙ୍କୁ ହରିଭକ୍ତି ଉପରେ କହିବାକୁ କହିଲେ । ତାହାପରେ ସେ କହିଲେ ।

ପିତୃସତ୍ୟ ପାଳନ ପାଇଁ ରାମ, ଲକ୍ଷ୍ମଣ ଓ ସୀତା ଦଣ୍ଡକା-ରଣ୍ୟରେ ବନବାସ କରୁଥିଲେ । ମହାଦେବଙ୍କର ମନ ହେଲା ରାମଙ୍କୁ ଦର୍ଶନ କରିବେ ବୋଲି । ପୁଣି ମନେହେଲା ଯେ ଲୋକେ ଜାଣିଯିବେ ରାମ ପରମ୍ ବ୍ରହ୍ମ ବୋଲି । ତଥାପି ତାଙ୍କର ପ୍ରବଳ ଇଚ୍ଛା ମହାଦେବଙ୍କୁ ଅସ୍ଥିର କଲା । ମାରୀଚ ମୃଗ ରୂପ ଧରି ସୀତାଙ୍କଠାରୁ ରାମଙ୍କୁ ଦୂରେଇ ଦେଲେ ।

ରାବଣ ମାୟା ସନ୍ୟାସୀ ରୂପରେ ସୀତାଙ୍କୁ ଭୁଲାଇ ନେଇଗଲା । ମହାଦେବ ମହାଜ୍ଞାନୀ । ସେ ଜାଣିଲେ ଯେ ଏହା ପ୍ରଭୁଙ୍କର ଲୀଳା । ଏହା ବିଚିତ୍ର, ନାନା ରଙ୍ଗର ନାନା ରସଯୁକ୍ତ । ଏ ସୀତାଙ୍କର ବିୟୋଗ କରୁଣରସ ।

ସୀତା ବିରହରେ ଅସହାୟ ରାମଙ୍କୁ ଦର୍ଶନ କଲେ ମନଭିତରେ । ପରିଚୟ ଦେଲେ ନାହିଁ । ପରମ ବ୍ରହ୍ମଙ୍କର ଜୟ ହେଉ କହି ପ୍ରଣତି ଜଣାଇଲେ ।

ପାର୍ବତୀ ଦେଖି ପାରିଲେ ଯେ ମହାଦେବ କାହାକୁ ପ୍ରଣତି ଜଣାଇଲେ । ତାଙ୍କଠାରୁ ଜାଣିପାରି ପଚାରିଲେ ବ୍ରହ୍ମ ମଣିଷ ରୂପ ଧରିଲେ କାହିଁକି । ଯଦି ସେ ବିଷ୍ଣୁ, ସବୁ ଜାଣିଛନ୍ତି ତେବେ ମୂର୍ଖଙ୍କ ପରି ସ୍ତ୍ରୀ ହଜାଇ ଖୋଜୁଛନ୍ତି କାହିଁକି ? ସେତ ସର୍ବଜ୍ଞ । ସେ କପରି ଜାଣିପାରୁ ନାହାନ୍ତି ତାଙ୍କ ସ୍ତ୍ରୀକୁ କିଏ ନେଇଛି ବୋଲି । ପୁଣି ଶିବଙ୍କ କଥା ମିଥ୍ୟା ହୋଇ ପାରିବନା ।

ସେଇ ରାମ ଶିବଙ୍କର ଇଷ୍ଟଦେବ । ଏହା ସତ୍ତ୍ୱେ ପାର୍ବତୀଙ୍କର ସନ୍ଦେହ ଦୂର ହେଲା ନାହିଁ । ପାର୍ବତୀ ନିଜେ ଯାଇ ପରୀକ୍ଷା କରିବା

ପାଇଁ ଶିବଙ୍କୁ କହିଲେ । ଶିବ କହିଲେ 'ମୋ କଥା ଅବିଶ୍ୱାସ କରିବା ଅଧର୍ମ । ତଥାପି ପାର୍ବତୀ ଗଲେ ।

ପାର୍ବତୀ ସୀତାଙ୍କ ରୂପ ଧରିଲେ । ରାମ ଜାଣିପାରି ପ୍ରଣାମ ଜଣାଇଲେ । ପାର୍ବତୀ ସତୀ ସ୍ୱାମୀଭକ୍ତ । ପତିଙ୍କୁ ଛାଡ଼ି ବୁଲିଲେ ଧର୍ମ ହୁଏନା । ପାର୍ବତୀ ଲଜ୍ଜିତା ହେଲେ । ଆଗରେ, ପଛରେ ସର୍ବତ୍ର ରାମ ଲକ୍ଷ୍ମଣ, ସୀତା ଦେଖିଲେ । ପ୍ରତ୍ୟେକ ଦେବତା ତାଙ୍କୁ ପୂଜା କରୁଛନ୍ତି । ଭୟରେ ତାଙ୍କ ଛାତି ଥରି ଉଠିଲା । ରାମ ପରଂବ୍ରହ୍ମ ବୋଲି ଜାଣିଲେ । ପ୍ରଣାମ ଜଣାଇଲେ । ମହାଦେବଙ୍କ ନିକଟକୁ ଗଲେ । ମହାଦେବ ଧ୍ୟାନ ବଳରେ ସବୁ ଜାଣି ପାରିଲେ । ପାର୍ବତୀ ସୀତାଙ୍କ ରୂପଧାରଣପାଇଁ ଦୁଃଖ କଲେ । ମହାଦେବ ପାର୍ବତୀଙ୍କୁ ତ୍ୟାଗକଲେ । ନହେଲେ ଅନର୍ଥ ହୋଇ-ଥାନ୍ତା । ଭକ୍ତିପଥ ଉଚ୍ଛନ୍ନ ହୋଇଥାନ୍ତା । ପାର୍ବତୀ ସୀତା ରୂପ ଧରି ଥିବା ଦେହସହ ଭେଟ ହେବନାହିଁ ।

ସ୍ୱାମୀଙ୍କ ସହିତ କପଟାଚରଣ ତାଙ୍କୁ ପୃଥକ କଲା । ଶିବ ପାର୍ବତୀଙ୍କୁ ତ୍ୟାଗକଲେ । ଲିଙ୍ଗରାଜ ରୂପେ ନିଜ ନାମରେ ନାମିତ ଭୁବନେଶ୍ୱରରେ ପୂଜିତ ହେଲେ ।

ଅନ୍ୟାୟର ମୁକାବିଲା ପାଇଁ ସେ ପ୍ରାର୍ଥନା କରୁଥିବା ଭକ୍ତଙ୍କୁ ମଧ୍ୟ ଛାଡ଼ି ନାହାନ୍ତି । ପଞ୍ଚପାଣ୍ଡବ ଯୁଦ୍ଧ ପାଇଁ ପ୍ରସ୍ତୁତ ହେଲେ । ଭଗବାନ କୃଷ୍ଣ କହିଲେ, ବ୍ୟାସଦେବ କହିଲେ, ଶେଷରେ ଇନ୍ଦ୍ର କହିଲେ ଶିବଙ୍କୁ ପ୍ରାର୍ଥନା କରିବା ପାଇଁ । ସେ ପଶୁପତ ଅସ୍ତ୍ର ଦେବେ । ବଣର ଘୁଷୁରିକୁ ଅର୍ଜୁନ ଗାଣ୍ଡିବରୁ ଶର ମାରିଲେ । ଶିବ ପମନାକରୁ ଶର ଛାଡ଼ିଲେ । ଅର୍ଜୁନ ଶିବଙ୍କୁ ମଣିଷ ରୂପରେ ଦେଖି ପଚାରିଲେ ତୁମେ କିଏ ? ତୁମ ସ୍ତ୍ରୀଙ୍କ ସହିତ ଏ ବଣରେ କାହିଁକି ବୁଲୁଛ ? ମୁଁ ମାରିଥିବା ଜନ୍ତୁ ତୁମେ କିପରି ମାରିଲ ?

ସେ କହିଲେ "ଏ ଆମର ବଣ । ଏଥିର ବହୁତ ଜନ୍ତୁ ଅଛନ୍ତି । ତୁମକୁ ମୁଁ ମାରିଦେବି ତୁମେ କିଏ ? ଏଠାରେ କ'ଣ କରୁଛ ? ତୁମେ ଯଦି ଅନ୍ୟ କିଛି ଭାବୁଛ, ମୋ ସହିତ ଯୁଦ୍ଧ କର ।"

ଏହା ଶୁଣି ଅର୍ଜୁନ ଖୁସିହେଲେ । ଲଢିଲେ, ବହୁତ ଶର ମାରିଲେ । ସବୁ ଅକାରଣହେଲା । ଗାଣ୍ଡିବରେ ଆଘାତ କଲେ । ଖଣ୍ଡ ଖଣ୍ଡ ହେଲା, ଖଣ୍ଡାରେ ଯୁଦ୍ଧକଲେ । ସେ ସବୁ ଖଣ୍ଡ ଖଣ୍ଡ ହେଲା ।

ଶେଷରେ ସେ ଶିବଙ୍କୁ ପ୍ରାର୍ଥନା କଲେ । ସେ ଜାଣି ପାରିଲେ ଯେ ଯାହା ସହିତ ଯୁଦ୍ଧ ହେଲା ସେ ଶିବ । ପ୍ରଣମିଲେ । ପାଶୁପତ ଅସ୍ତ୍ର ମାଗିଲେ । ଶିବଙ୍କାରେ ତାଙ୍କୁ ଛୁଇଁଦେଲେ । ସମସ୍ତ ଘାତ ଶୁଖି ଗଲା । ସେ ବଳଶାଳୀ ହେଲେ ।

ଏ ଦେଶର ଇତିହାସ ଅଭୁଲା । ଦେଉଳରେ, ପର୍ବତ, ପାହାଡରେ, ଏ ମାଟିତଳେ ଶିଳାଲିପି ଅକ୍ଷର କଥା କହେ ।

ଶ୍ରୀକ୍ଷେତ୍ରର ପାତାଳେଶ୍ବରର ଲିପି, ଶିଳାଲିପି ସବୁ ଜଣାଏ, ଗୀତଗୋବିନ୍ଦ ଲେଖାଅଛି ।

ଭୁବନେଶ୍ବରରେ ଅନନ୍ତ ବାସୁଦେବ ମନ୍ଦିର । ଏ ଦେଉଳର ପଶ୍ଚିମ ପାଚଘରେ ଲେଖା ଦେଖିବାକୁ ମିଳେ । ଦେଉଳ, ପୋଖରୀ କଥା ଲେଖାଅଛି । ନିଜେ ଶିବ ବିନ୍ଦୁସାଗର ଖୋଳାଇଥିଲେ । ଏହାର ଅନ୍ୟ ନାମ ଗୋସାଗର, ପ୍ରତ୍ୟେକ କ୍ଷେତ୍ରରୁ ଜଳବିନ୍ଦୁ ଆସି ଏ ପୋଖରୀ ଖୋଳା ହୋଇଥିବାରୁ ଏହାର ନାମ ବିନ୍ଦୁସାଗର । ମହାଭାରତର ବନପର୍ବରେ ବିନ୍ଦୁ ହ୍ରଦ କଥା ଅଛି ।

ଭୁବନେଶ୍ବର ଦେଉଳ ନାଟମନ୍ଦିର କବାଟ, ହାତୀଗୁମ୍ଫା, ପବନ ଗୁମ୍ଫା, ଅଜଗର, ବାଘ, ଜାଳନ୍ଦ୍ର ଗୁମ୍ଫା ଏ ଦେଶର ଇତିକଥା କହେ ।

କଟକରୁ ୧୩ ମାଇଲ ଦୂର ଗୋପୀନାଥପୁର ବିରୂପା ନଦୀ ଉପରେ ଅଛି । ସେ ଦେଉଳର ଲିପିର ଭାଷା ସଂସ୍କୃତ । ସେଥିରେ କପିଳେନ୍ଦ୍ରଙ୍କ ଯୁଦ୍ଧ କଥା ଲେଖା ଅଛି ।

କଟକର ଚନ୍ଦ୍ରପୁର ଗ୍ରାମରେ ଗୃଟେଶ୍ୱର ଶିବ ମନ୍ଦିର ଅଛି । ଶୁଣାଯାଏ ମହାଦେବ ବୃଟ ରୂପରେ ଅବଧାନଙ୍କ ନିକଟ ମୁହାଁଳକୁ ଆସୁଥିଲେ । ପରେ ବୃଟେଶ୍ୱର ରୂପେ ପ୍ରକାଶିତ ହେଲେ ।ନରସିଂହ ଦେବଙ୍କ ତାମ୍ର ଶାସନରୁ ଜଣାଯାଏ କାମ୍ଲାବ ଜଣେ ଆଦ୍ୟ ପୁରୁଷ । ତାଙ୍କର ପାଟରାଣୀ ରାଜ ସୁନ୍ଦରୀଙ୍କ ଚୋଡ଼ଗଙ୍ଗ ଦେବ । ସେ ୭୦ ବର୍ଷ ରାଜ୍ୟ ଚଳାଇଥିଲେ । ଚୋଡଗଙ୍ଗଙ୍କ ପୁତ୍ର କାମ୍ଲାବ, ପରେ ଅନଙ୍ଗଭୀମଦେବ ୩୪ ବର୍ଷ ରାଜତ୍ୱ କଲେ । ନରସିଂହ ଦେବ ତାଙ୍କ ପୁଅ, ତାଙ୍କର ୧୭ ଜଣ ମନ୍ତ୍ରୀ ଥିଲେ । ସେମାନେ ମାଣ୍ଡଳିକ ।

ଚୋଡ଼ଗଙ୍ଗଙ୍କ ତାମ୍ର ଶାସନର ସାରାଂଶ । ସେ ଯେତେବେଳେ ୧୦ ବର୍ଷର ତାଙ୍କ ପିତା ମରିଗଲେ । ସେ ରାଜେନ୍ଦ୍ର ଚୋଳଙ୍କ ଦ୍ୱାରା ରାଜନୀତି ଓ ଅସ୍ତ୍ରଶିକ୍ଷା ପାଇଲେ । ୧୧୦୨ରେ ପୂର୍ବଶ୍ରୀକେଶରୀଙ୍କୁ ପରାସ୍ତ କଲେ । ଓଡ଼ିଆ ରାଜସିଂହାସନ ଅଧିକାର କଲେ । ସେ ୭୦ ବର୍ଷ ରାଜତ୍ୱ କଲେ । ତାଙ୍କର ୧୭ଜଣ ରାଣୀ ଥିଲେ । ସେ ଉତ୍କଳ ଓ କଳିଙ୍ଗ ମିଶାଇଲେ । ତାଙ୍କ ଜ୍ୟେଷ୍ଠ ପୁତ୍ର କାମାଦେବ ସେ ଜୀବିତ ଥିଲାବେଳେ ସିଂହାସନରେ ବସିଥିଲେ । ଚୋଡ଼ଗଙ୍ଗ କଳିଙ୍ଗକୁ ୭ଟି ଭାଗରେ ବିଭକ୍ତ କରିଥିଲେ । ପ୍ରତ୍ୟେକ ଭାଗରେ ୨୦ ତାଲୁକ ଥିଲା । ପ୍ରତ୍ୟେକ ତାଲୁକରେ ୧୨-୧୫ଟି ଗାଁ । ପ୍ରତ୍ୟେକ ଗ୍ରାମରେ ନାୟକ, ସେ ଥିଲେ ଶିବଭକ୍ତ ।

ଅଜ୍ଞାନ, ଅନ୍ଧାର, ଭେଦ, ପଙ୍କ ଅନ୍ୟାୟ ଅଧର୍ମ, ଅସତ୍ୟ, କ୍ରୋଧ, ଅହଂକାର ହେଲା ରୋଗ । ମନର କୁଷ୍ଠରୋଗ, କୁଷ୍ଠରୋଗ ଦେହ ସମାଜକୁ ଖଣ୍ଡ ଖଣ୍ଡ କରିଦିଏ । ଆଣେ ବିଭେଦ । ମନୁଷ୍ୟକୁ ଧର୍ମ ଛଡ଼ା କରେ । ଧର୍ମମାନେ ମାତିବଜ୍ଞାନ । ଅଶାନ୍ତି ଆଣେ । ଆଣେ ହିଂସା, ହିଂସା,

ଯୁଦ୍ଧ, ସର୍ବନାଶ । ମାନବିକତା ଶୂନ୍ୟ ବିଜ୍ଞାନ; ଧର୍ମଛଡ଼ା ବିଜ୍ଞାନ ଆମର ଦରକାର ନାହିଁ । ଏହା ମଣିଷକୁ ଅନ୍ଧକରେ । ଦୁର୍ନୀତି ଗ୍ରସ୍ତ ବ୍ୟବସାୟ ଠିକ୍ ଏହିପରି । ମନେରଖ ପ୍ରଥମେ ବଢ଼ିବ ପରେ ମୂଳ ସୁଦ୍ଧା ତୁଟିବ, ଚରିତ୍ରହୀନ ଶିକ୍ଷା ମଧ୍ୟ ଏହିପରି । ମଣିଷକୁ ପଶୁ ସ୍ତରକୁ ଆଣେ ।

ଗୀତାକୁ ଓଲଟାଇଲେ ତ୍ୟାଗୀ । ସମସ୍ତ ଖରାପ ଗୁଣର ତ୍ୟାଗ । ଏହା ଆଣେ ମୁକ୍ତି ।

ନିର୍ମଳତା ହିଁ ସୌନ୍ଦର୍ଯ୍ୟ । ସତ୍ୟ, ସଞ୍ଜମ, ସହାନୁଭୂତି ଓ ତ୍ୟାଗ, ମଣିଷକୁ ଭଗବାନ କରିଦିଏ । ଶାନ୍ତିରୁ ଅନନ୍ତ, ଅନ୍ଧାରରୁ ଆଲୋକ, ଭେଦରୁ ଅଭେଦ, ପଙ୍କରୁ ପଙ୍କଜ, ଆଣିଥିଲା, ଅହିଂସା, ବିନମ୍ରତା, ପ୍ରେମ, ଦାନ ସତ୍ୟ ସଂଯମ ଗଢ଼ିଥିଲା ଶିବଙ୍କୁ । ଦାନରେ ସୌନ୍ଦର୍ଯ୍ୟ, ତ୍ୟାଗରେ ଭୋଗ, ନମ୍ରତାର ସହାନୁଭୂତା, ସରଳତାର ସରସତା ଆଣିଛି ସର୍ବଜନ ସୁଖକର, ସର୍ବଜନ ହିତକର । ତାଙ୍କର ନିର୍ମଳ ବୁଦ୍ଧି, ଉଦାର ଭାବନା ତାଙ୍କୁ କରିଛି ମହାଦେବ । ତାଙ୍କ ଭୁବନେଶ୍ୱର ମନ୍ଦିରକୁ କରିଛି ସ୍ୱର୍ଗ । ଏହା ଏତେ ବିଶାଳ ଯେ ଦୁର୍ଦ୍ଧାନ୍ତ ମୁନିମ ଖାଁ ଏ ମନ୍ଦିରକୁ ଭାଙ୍ଗି ନ ପାରି ଏ ସ୍ଥାନକୁ ସ୍ୱର୍ଗ କହି ଫେରି ଯାଇଛି । ଏହା ମନୁଷ୍ୟର ଜୟପାଇଁ ନୁହଁ ଏହା ସାକ୍ଷାତ ସ୍ୱର୍ଗପୁର ।

ତାଙ୍କ ସତ୍ୟ ସଂଯମ ଶକ୍ତି ହେଉଛି ଆମ ଭାରତୀୟ ସଂସ୍କୃତିର ଆତ୍ମା । ସବୁ ସଂସ୍ଥାକୁ ତାଙ୍କର ଆଦର କରି ତାଙ୍କୁ କରିଛି ମହାନ୍ ଓ ବିଶାଳ ।

ସେହି ମହାଦେବ ହେଉଛନ୍ତି ଶଙ୍କର, ମହେଶ୍ୱର, ବଳରାମ । ସେ ପ୍ରଥମ ଅବସ୍ଥାରେ ଗୋରୁଙ୍କ ସେବାକରି ବୈଶ୍ୟର କାମ କଲେ । ପରେ ହଳଚଷି ଜମି ଚାଷ କରି, ପରେ ଗଦା ଯୁଦ୍ଧକରି, ଦୁର୍ଯ୍ୟୋଧନ ଭୀମଙ୍କ ଗୁରୁ ହୋଇ କ୍ଷତ୍ରିୟ ହେଲେ । ପରେ ପରେ ସମସ୍ତଙ୍କୁ ଉପବୀତ ଦେଲେ,

ଜ୍ଞାନ ଉପବୀତ ଦେଲେ, ଜ୍ଞାନ ଆଲୋକ ଦେଲେ । ସେ ଉପବୀତ ଦୟା କରୁଣା ସୂତାରେ । ପଶିତୋଷତାର ସୂତ ଥିଲା । କର୍ମ ଭକ୍ତି ଜ୍ଞାନ ଉପବୀତର ବ୍ରହ୍ମ ଗ୍ରନ୍ଥ ଦଆଇଲେ । ସତ୍ୟ ସେ ସୂତାଙ୍କୁ ଯୋଡ଼ି ଥିଲା । ସେଦିନ ସେ ଦେଇଗଲେ ଆଶାର ଉପବୀତ ।

ଜୀବନକୁ ପ୍ରେମମୟ କରି, କର୍ମମୟ କରି କର୍ମ ଫଳ ତ୍ୟାଗ କରି ସତ୍ୟ ରୂପୀ ଭଗବାନଙ୍କୁ ସମାଜ ରୂପୀ ଦେବତାଙ୍କ ପୂଜା କରି ଗଉଡ଼ କାମକରି ଗୋରୁଜଗି, ହଳକରି, ଗଦା ଯୁଦ୍ଧକରି ବ୍ରହ୍ମଜ୍ଞାନ ଦାନକରି ବୈଶ୍ୟ, କ୍ଷତ୍ରିୟ, ବ୍ରାହ୍ମଣ ହୋଇ; ଯୁଦ୍ଧ ତ୍ୟାଗକରି ଆକାଶ ଛାତ ତଳ ମାଟିମା ଉପରେ ବସି ଦେହ ତ୍ୟାଗ କରିଥିଲେ । ସେମାନଙ୍କର ମାଙ୍ଗଳ୍ୟ ବାଣୀ— ସଚ୍ଚହୁଅ, ଭଲପଣିଆରେ ଭରିଦିଅ, ଜ୍ଞାନରେ ଅଳଙ୍କୃତ ହୁଅ, ଉତ୍ସାହରେ ସ୍ଫୂର୍ତ୍ତି ହୁଅ । ଆନନ୍ଦରେ ପୂର୍ଣ୍ଣ ରହ । ଦେହ ସହ ତ୍ୟାଗରେ ଜଳଉଠ । ଶକ୍ତିରେ ଶକ୍ତିମାନ ହୁଅ । ତାଙ୍କର ଥିଲା ଅଭେଦ ଦୃଷ୍ଟି । ଆଦିବାସୀ ପୁଅ ନନ୍ଦି, ଭୃଙ୍ଗି ତାଙ୍କର ଆଦରର । ବୋକା ମଣିଷ, ଭୂତ ତାଙ୍କର ସନ୍ତାନ । ଷଣ୍ଢ ତାଙ୍କ ଆପଣାର । ସାପର ଆବାସ ସେ । ବରଫଭରି ହିମାଳୟ ତାଙ୍କ ଘର । ଶ୍ମଶାନ ତାଙ୍କ ଘର । ସବୁଯାଗା ତାଙ୍କ ଘର । ଏହିପରି ଆନନ୍ଦରେ ସେ ନାଚନ୍ତି । ପ୍ରେମର ଅଖଣ୍ଡ ଝରଣା । ସେ ଶକ୍ତିର ନବ ନବ ରୂପରେ ନାଚି ନାଚି ଗ୍ଲାଇଯାନ୍ତି ଅନ୍ତିମାନସ ଶକ୍ତିକୁ । ଜନ୍ମଦିଏ ଆତ୍ମପୂର୍ଣ୍ଣତା । ଏ ଧୂଳିର ଧରଣୀକୁ କରେ ସ୍ୱର୍ଗ । ବିଶ୍ୱକୁ କରେ ଘର । ହୃଦୟରେ ଆସେ ନୂତନତା । ଶିହରି ଉଠେ ଶରୀର । ମନ ପ୍ରଫୁଲ୍ଲିତ ହୁଏ । ବିଷଧର ସାପ ପାଖକୁ ଆସେ, ନାଚେ ଖେଳେ । ଆଲୋକ ଜଳି ଉଠେ । ଶୁଦ୍ଧ ଭକ୍ତି ଉଠେ । ସମସ୍ତେ ବନ୍ଧୁର ହୁଅନ୍ତି । ସମସ୍ତ ଦୁଃଖ ପାଖେଇ ଆସନ୍ତି, ନଚହୁଅନ୍ତି । ଦୁଃସ୍ଥ ସୁସ୍ଥ ହୁଏ ।

ହାଣିବାକୁ ଆସୁଥିବା ମଣିଷର ହାତରୁ ଛୁରି ଖସି ପଡ଼େ । ପ୍ରେମରେ ଭସାଇ ଦିଏ । ସମସ୍ତଙ୍କୁ ନିଜର କରେ । ସବୁ ଘଟରେ ନାରାୟଣ ଦେଖେ । ସମସ୍ତେ ଗୋଟିଏ କୁଟୁମ୍ବ ହୁଅନ୍ତି । ସାରା ବିଶ୍ୱକୁ ନିଜର ଘର ବୋଲି ଭାବନ୍ତି ।

ଏବେବି ସମତାର ଡିଣ୍ଡିମ ବାଜୁଛି । ଶୁଭୁ ନାହିଁ । ହୃଦୟ ସତ୍ୟ, ଧର୍ମ, ନ୍ୟାୟ ପ୍ରେମରେ ଭରିଗଲେ ଅଭେଦ ଦୃଷ୍ଟି ଆସିବ । ଶରୀର ପାଇଁ ତପସ୍ୟା, ସମାଜ ପାଇଁ ଦାନ, ତ୍ୟାଗ ଓ ସୃଷ୍ଟି ପାଇଁ ପ୍ରୀତି ତାଙ୍କର ବାଣୀ । ପ୍ରମତ୍ତ ନ ହୋଇ ଉତ୍ଥିତ ହୁଅ ।